# ଛନ୍ଦଃଶାସ୍ତ୍ର ସୁଚର୍ଚ୍ଚିତ

## *ମଙ୍ଗଳାଚରଣ:*

*ପଥ୍ୟାବକ୍ତ୍ର ଶ୍ଳୋକ*

*ନମୋ ଗଣେଶ ବିଘ୍ନେଶ*
*ନମୋ ମାତଃ ସରସ୍ୱତି ।*
*ନମସ୍ତେ ବେଦ ବେଦାଙ୍ଗ*
*ଆଦିମାତଃ ନମୋ ନମଃ **॥1 ॥***

*ଶୁଭାରମ୍ଭ କରେ ବିଦ୍ୟା*
*ଶିକ୍ଷା ନେବି ମୁଁ ଛନ୍ଦରେ ।*
*ଆତ୍ମଶାନ୍ତି ତଥା ଭୂତେ*
*ଦୈବତେ ଶାନ୍ତି ମୋ ରଖ **॥2 ॥***

*ଜୟ ମୋ ଆର୍ଯ୍ୟଭୂଖଣ୍ଡ*
*ଜୟ ମୋ ରାଷ୍ଟ୍ରକେତନ*
*ଜୟ ମୋ ଦେଶରେ ଐକ୍ୟ*
*ଭ୍ରାତୃଭାବ ନମୋଽସ୍ତୁ ତେ **॥3 ॥***

*ମାୟାବାଦେ ଯଥା ଖ୍ୟାତ*
*ଆଦି ଶ୍ରୀଗୁରୁ ଶଙ୍କର ।*
*ମହର୍ଷି କପିଳାଚାର୍ଯ୍ୟ*
*ସର୍ବାଗ୍ରେ ସାଂଖ୍ୟଦର୍ଶନେ **॥4 ॥***

*ଯଥା ବ୍ୟାକରଣେ ଅଗ୍ରେ*
*ଶାସ୍ତ୍ରକାର ପତଞ୍ଜଳି ।*
*ପିଙ୍ଗଳାଚାର୍ଯ୍ୟ ତଦ୍ରୂପ*
*ଛନ୍ଦଃଶାସ୍ତ୍ରବିଧାୟକ **॥ ॥5 ॥***

*ପିତରେ ଇତରେ ଶ୍ରଦ୍ଧା*

*ରଖ ମା ଗୋ ବସୁନ୍ଧରେ ।*

*ଲାଗୁ ମୋ ଛନ୍ଦରେ ଶିକ୍ଷା*

*ସୁସାହିତ୍ୟ ବିକାସନେ ॥6॥*

*ଛନ୍ଦେ ସ୍ପଷ୍ଟ ମହତ୍ତ୍ୱ ଛ*

*ଛନ୍ଦଃଶାସ୍ତ୍ର ସୁଚର୍ଚ୍ଚିତ ।*

*ଆନନ୍ଦେ ମୁଁ କରେ ପାଠ*

*ଦିଅ ସର୍ବେ ଶୁଭାଶିଷ ॥7॥*

## *ପାଠ୍ୟ*

**ଛନ୍ଦଃପରିଚୟ:**

*ପଜ୍ଝଟିକା*

ଛନ୍ଦୋଽଭ୍ୟାସେ ଛାତ୍ରଛାତ୍ରୀ

କାଟିଛ ବହୁତ ଉଜାଗର ରାତ୍ରୀ ।

ସଙ୍କୁଳ ବହିରୁ ବଢାଇଛ ଚିନ୍ତା

ଭାବିଛ ଭଲ ମୁ ନୁହେଁ ଅଧେତା ॥1॥

ପରିହରି ଚିନ୍ତା  ପାଠକୁ ଏବେ

ଶ୍ରଦ୍ଧାରେ ପଢ ମୋ ସହ ସର୍ବେ ।

ଧୀରେ ବୁଝ ବସି ନାହିଁ ଭୟ ପିଲେ

କଟି ଯିବ ମନରେ ସନ୍ଦେହ ଥିଲେ ॥2॥

ମାତ୍ରା, ବର୍ଣ୍ଣର ଶୃଙ୍ଖଳରୁ ଗଢା

ଛନ୍ଦ ହିଁ କାବ୍ୟେ ବ୍ୟାକରଣ ପଢା  ।

ବେଦରୁ ଛନ୍ଦ ସୁଜନ୍ମିତ କାବ୍ୟେ

ବକଶିତ ଯାହା ଲୌକିକ ଭାବେ ॥3॥

**ବୈଦିକ ଓ ଲୌକିକ ଛନ୍ଦ:**

ବେଦେ ବୈଦିକ ଛନ୍ଦଟି ବନ୍ଧା

ଲୌକିକ ଛନ୍ଦେ ଲେଖକ ଛନ୍ଦା ।

ବୈଦିକ ଛନ୍ଦେ ଅକ୍ଷର ଗଣନା

ଲୌକିକ କବିଜନ ଚିତ୍ତର ଲଳନା ॥4॥

ବାର୍ଣ୍ଣିକ ଲଘୁଗୁରୁ ବର୍ଣ୍ଣ ସୁସଜ୍ଜା

ମାତ୍ରିକ ସୁନିୟତ ମାତ୍ରା ଖଞ୍ଜା ।
ଅନିୟତ ତହିଁରେ ଅକ୍ଷର ସଂଖ୍ୟା
ମାତ୍ରା ହିଁ କରେ ସଂହତି ରକ୍ଷା ॥5॥

ଉଚ୍ଚାରିତ ଲଘୁ ଅଳ୍ପ ସମୟରେ
ଏକ ହିଁ ମାତ୍ରା କାଳ କଳନରେ ।
ବେଶି ସମୟ ନେଲେ କହିବାରେ
ଦୁଇ ମାତ୍ରା ସେ ଜାଣିବ ଶାସ୍ତ୍ରେ ॥6॥

ଲଘୁରେ ମାତ୍ରା ଏକ ହିଁ କଥନେ
ଜାଣିବ ଦୁଇ ମାତ୍ରା ଗୁରୁ ବର୍ଣ୍ଣେ ।
ଏ ଦୁଇ ଭେଦର ବର୍ଣ୍ଣ ହିଁ ଥାଏ
ଶୁଣି ବୁଝ ଲଘୁଗୁରୁ ବର୍ଣ୍ଣ ପିଲାଏ ॥7॥

**ବର୍ଣ୍ଣପରିଚୟ - ଲଘୁ ଓ ଗୁରୁ ବର୍ଣ୍ଣ:**
*ପଥ୍ୟାବକ୍ତ୍ର ଶ୍ଲୋକ*

ସାନୁସ୍ୱାର ବିସର୍ଗାନ୍ତ
ଦୀର୍ଘ ସଂଯୁକ୍ତପୂର୍ବକ
ହଳାଗ୍ରେ ଗୁରୁ ପାଦାନ୍ତେ
ଲଘୁ ଅନ୍ୟାନ୍ୟ ସର୍ବକ ॥8॥

ନ ଥାଏ ବ୍ୟଞ୍ଜନେ ମାତ୍ରା
ଉଚ୍ଚାରିତ ନିଜେ ନୁହେଁ
ସ୍ୱରେ ସେ ସ୍ୱର-ସଂଯୋଗେ
ସମୟ ସ୍ୱର ଯା ନିଏ ॥9॥

**ଅଷ୍ଟଗଣପରିଚୟ:**
*ତୋଟକ*

ତିନି ବର୍ଣ୍ଣ ଗଣୈକ ମନେ ରଖିଥା
ମଗଣେ ଗରୁ ବର୍ଣ୍ଣ ସମସ୍ତ ରଖା ।
ୟଗଣେ ରଗଣେ ଲଘୁ ଆଦ୍ୟ, ମଝି
ସଗଣେ ଗୁରୁ ଶେଷକୁ ମାତ୍ର ଅଛି ॥10॥

ଲଘୁଶେଷ ଥିଲେ ତଗଣେ ଗଣିବା

ଗୁରୁମଧ୍ୟର ନାମ ଜ ଜାଣିଥିବା ।
ଭଗଣେ ଗୁରୁ ଆଦି, ନ ସର୍ବଲଘୁ
ସରିଲା ଗଣ ଆଠର ନାମ ସବୁ ॥11॥

**ସମ ଅର୍ଦ୍ଧସମ ଓ ବିଷମଛନ୍ଦ:**

*ଇନ୍ଦ୍ରବଜ୍ରା*

ଚତ୍ୱାର ଅଂଶେ ଅଧିକାଂଶ ଛନ୍ଦ
ପ୍ରତ୍ୟେକ ଆବେଦିତ ପାଦ ଶବ୍ଦେ ।
ଭାଷା ଚତୁର୍ଥାଂଶକୁ ପାଦ ଭାଷେ
ସେ ହେତୁ ଏ ଅଂଶର ନାମ ପଦ୍ୟେ ॥12॥

ଏ ସର୍ବପାଦେ ବିଧି ଏକ ହେଲେ
ସେ ଛନ୍ଦ ଯାଏ ସମ ଛନ୍ଦ ମଧ୍ୟେ ।
ଏକା ଅଯୁଗ୍ମେ ପୁଣି ଅନ୍ୟ ଯୁଗ୍ମେ
ଯେ ଛନ୍ଦରେ ଅର୍ଦ୍ଧସମ ପ୍ରଭେଦେ ॥13॥

ଅଯୁଗ୍ମ ଯେବେ ନ ମିଶେ ଅଯୁଗ୍ମେ
ବା ଯୁଗ୍ମ ଯୁଗ୍ମେ ନ ମିଶେ ବିଧାନେ ।
ସେ ଛନ୍ଦ ଯାଏ ବିଷମ ପ୍ରବର୍ଗେ
ଏ ଭାବରେ ଛନ୍ଦ ତିନି ପ୍ରଭାଗେ । ॥14॥

**ଉପଜାତୀୟ ଛନ୍ଦ:**

*ଉପଜାତି*

ନିର୍ଦ୍ଦିଷ୍ଟ କେତେ ପୁଣି ଛନ୍ଦ ଯାହା
ସମ୍ମିଶ୍ରଣେ ସୃଷ୍ଟ ହୁଏ ବି ପଦ୍ୟ ।
ତା ମଧ୍ୟରେ ସାମ୍ୟ ମିଳେ ଅନେକ
ପ୍ରଭେଦ ଆଦ୍ୟାକ୍ଷର ମାତ୍ର ଲବ୍ଧ ॥15॥

ବଂଶସ୍ଥରେ ଯେ ପରି ଇନ୍ଦ୍ରବଂଶା
ଉପେନ୍ଦ୍ରବଜ୍ରା ସହ ଇନ୍ଦ୍ରବଜ୍ରା ।

ସନ୍ମିଶ୍ରଣେ ତା ଉପଜାତି ବର୍ଗେ

ମାନ୍ୟତ୍ୱରେ ସେ କବିତା ପବିତ୍ରା ‖16‖

**ବର୍ଣ୍ଣସଂଖ୍ୟାନୁକ୍ରମେ ବର୍ଗୀକରଣ:**

***ପଥ୍ୟାବକ୍ତ୍ର ଶ୍ଳୋକ***

ବେଦେ ଓ ବାର୍ଣ୍ଣିକଛନ୍ଦେ
ବର୍ଣ୍ଣସଂଖ୍ୟା କ୍ରମେ ହୁଏ
ବିଭିନ୍ନ ବର୍ଗରେ ଭାଗ
ଶୁଣ ସେ ନାମସାରଣୀ ‖17‖

ଏକ ବର୍ଣ୍ଣେ ହୁଏ ଉକ୍ତା
ଅତ୍ୟୁକ୍ତା ବେନି ବର୍ଣ୍ଣରେ ।
ତିନି ବର୍ଣ୍ଣ ଥିଲେ ମଧ୍ୟା
ପ୍ରତିଷ୍ଠା ଚତୁରକ୍ଷରା ‖18‖

ସୁପ୍ରତିଷ୍ଠା ଥିଲେ ପାଞ୍ଚ
ଗାୟତ୍ରୀରେ ଷଡକ୍ଷର ।
ସପ୍ତାକ୍ଷରେ ହୁଏ ଉଷ୍ଣିକ୍
ଅନୁଷ୍ଟୁପ୍ ଅଷ୍ଟବାର୍ଣ୍ଣିକ ‖19‖

ନ ବର୍ଣ୍ଣେ ବୃହତୀଛନ୍ଦ
ପଙ୍କ୍ତି ନାମ ଦଶାକ୍ଷର ।
ଏଗାର ଅକ୍ଷରେ ତ୍ରିଷ୍ଟୁପ୍
ଜଗତୀ ଦ୍ୱାଦଶାଗମେ ‖20‖

ତେର ଅକ୍ଷରରେ ଛନ୍ଦ
ଜଗତୀ ପୂର୍ବରେ ଅତି । (ଅତିଜଗତୀ)
ଚତୁର୍ଦ୍ଦଶାକ୍ଷରେ ଯାହା
ନାମ ତାହାର ଶକ୍କରୀ ‖21‖

ବର୍ଣ୍ଣ ପଞ୍ଚଦଶଛନ୍ଦ

ନାମ ତା ଅତିଶକ୍ୱରୀ ।
ଅଷ୍ଟି ଅତ୍ୟଷ୍ଟି ତା ଅନ୍ତେ (16, 17)
ଷୋଡଶେ ସତରେ ତଥା ॥22॥

ଆଷ୍ଟାଦଶେ ଧୃତିଚ୍ଛନ୍ଦ
ପରେ ଅତିଧୃତି ସ୍ଥିତା । (18, 19)
ତାହା ପରକୁ ତଦ୍ରୂପେ
କୃତି ପ୍ରକୃତି ଆକୃତି ॥23॥ (20, 21, 22)

ତତ୍ପରେ ବିକୃତିଚ୍ଛନ୍ଦ (23)
ଚତୁର୍ବିଂଶସ୍ଥ ସଂକୃତି । (24)
କ୍ରମେ ଅତିଧୃତିଚ୍ଛନ୍ଦ (25)
ଛବିଶେ ନାମ ଉତ୍କୃତି ॥24॥ (26)

ଏହାଠୁ ବଡ ଯେ ଛନ୍ଦ
ସମସ୍ତ ଦଣ୍ଡକେ ଗଣା ।
ସତେଇଶ ଅଠେଇଶ
ଆଦି ଯେତେ ଅନାମିକା ॥25॥

ଏ ସର୍ବ ନାମତାତ୍ପର୍ଯ୍ୟ
ବର୍ଣ୍ଣସଂଖ୍ୟା ହିଁ କେବଳ ।
ଛନ୍ଦରେ ନ ଥିଲେ ଲେଖା
ସେ ବର୍ଣ୍ଣ ଗଣିବା ବୃଥା ॥26॥

## ମାତ୍ରିକ ଷଡ୍‌ଗଣ ପରିଚୟ

ମାତ୍ରିକଛନ୍ଦରେ ଥାଏ
ମାତ୍ରା ଗଣନରେ ଗଣ ।
ଛ ମାତ୍ରାରୁ ଦ୍ୱିମାତ୍ରାରେ
ଗଣ ପାଞ୍ଚଟି ନାମିତ ॥27॥

ଛ ମାତ୍ରା ଟଗଣେ ମାନ୍ୟା
ଠ ନାମେ ପଞ୍ଚମାତ୍ରିକ ।
ଡଗଣେ ଚାରିଟା ମାତ୍ରା
ଡ, ଢ ନଷ୍ଟ କ୍ରମାନ୍ୱୟେ ॥28॥

## ମାତ୍ରାସଂଖ୍ୟାନୁକ୍ରମେ ସମମାତ୍ରିକ ବର୍ଗୀକରଣ:

ଯା ବର୍ଣ୍ଣନିୟମେ ଲେଖା
ବର୍ଣ୍ଣସଂଖ୍ୟାରୁ ଯେସନ ।
ବର୍ଗନାମ ତଥା ଦତ୍ତ
ମାତ୍ରାସଂଖ୍ୟାରୁ ମାତ୍ରିକେ ॥29॥

ଅତ୍ୟନ୍ତ ସ୍ବଳ୍ପ ମାତ୍ରାର
ନ ହୁଏ ଛନ୍ଦ ଲେଖନ ।
ସପ୍ତ ମାତ୍ରାରୁ ଉର୍ଦ୍ଧ୍ବସ୍ଥ
ଛନ୍ଦୋନାମ ଦିଏ କହି ॥30॥

ଲୌକିକେ ସାତଟା ମାତ୍ରା
ଆଠମାତ୍ରାର ବାସବ ।
ନରେ ଆଙ୍କ ହୁଏ ନାମ
ଦଶମାତ୍ରାରୁ ଦୈଶିକ ॥31॥

ତହୁଁ ରୌଦ୍ର ତଥାଦିତ୍ୟ (ରୌଦ୍ର, ଆଦିତ୍ୟ)
ପରେ ଭାଗବତ ସ୍ଥିତି । (13)
ମାନବ, ତୈଥିକ ଖ୍ୟାତି (14, 15)
ସଂସ୍କାରୀ ଷୋଡଶେ ତଥା ॥32॥

ସଂସ୍କାରୀ ଆଗରେ ସପ୍ତ-
ଦଶେ ଯୋଗ ହୁଏ ମହା । (17, ମହାସଂସ୍କାରୀ)
ପୌରାଣିକ, ତଥା ନାମ (18)
ମହାପୌରାଣିକ କ୍ରମେ ॥33॥ (19)

ମହାଦୈଶିକରେ ବିଂଶ
ତ୍ରୈଲୋକଛନ୍ଦ ତତ୍ପରେ ।(21)
ମହାରୌଦ୍ର ଚ ରୌଦ୍ରାର୍କ (22, 23)
ଅବତାରୀ ପରେ ପରେ ॥34॥ (24)

ଏବେ ମହାବତାରୀ ଓ (25)
ମହାଭାଗବତ କ୍ରମେ । (26)

ନାକ୍ଷତ୍ରିକ ପରେ ଆସେ (27)

ଅଷ୍ଟାବିଂଶର ଯୌଗିକ ॥35॥ (28)

ମହାଯୌଗିକ ତା ଅନ୍ତେ (29)

ତୈଥିକାଗ୍ରେ ବସେ ମହା । (30-ମହାତୈଥିକ)

ତହୁଁ ଅଶ୍ୱାବତାରୀ, ବ- (31)

ତ୍ରିଶେ ନାକ୍ଷତ୍ରିକ ସ୍ଥିତି ॥36॥ (32-ଲାକ୍ଷଣିକ)

ଦ୍ୱାତ୍ରିଂଶୋର୍ଦ୍ଧ୍ୱ ସମଛନ୍ଦେ

ସର୍ବେ ମାତ୍ରିକ ଦଣ୍ଡକ ।

ଷଡ୍‌ବିଂଶୋର୍ଦ୍ଧ୍ୱ ଥିଲେ ବର୍ଣ୍ଣ

ଯଥା ଦଣ୍ଡକ ବାର୍ଣ୍ଣିକ ॥37॥

**ବର୍ଣ୍ଣମାତ୍ରାସଂଖ୍ୟାନୁସାର ଶ୍ରେଣୀନାମର ବିକଳ୍ପ:**

ମନେ ନ ରହିଲେ ନାମ

ସଂଖ୍ୟା ତା ବଦଳେ କହ ।

ଗାୟତ୍ରୀ ବଦଳେ ଯେହ୍ନେ

କହି ପାର ଷଡକ୍ଷରୀ ॥38॥

ଦୈଶିକ ସ୍ଥାନରେ ମଧ୍ୟ

ଦଶମାତ୍ରିକ ଭାଷିବ ।

ଧୀରେ ଧୀରେ ମନେ ଯେତେ

ଲହିଲା ସେହି ମଙ୍ଗଳ ॥39॥

**ଭାରତୀୟ ଲିଖନରେ ଛେଦ (punctuation) ଚିହ୍ନ:**

ଭାରତେ ଲିପିରେ ଛେଦ-

ଚିହ୍ନ ଲମ୍ବ ହିଁ ଯୋଡିଏ ।

ଏକକ ଦ୍ୱୈତ ଏ ପୂର୍ଣ୍ଣ- ( । ଏବଂ ॥)

ଚ୍ଛେଦ ସାହିତ୍ୟରେ ମିଳେ ॥40॥

ଏକକ ପ୍ରଥମାର୍ଦ୍ଧାନ୍ତେ

ଦ୍ୱୈତ ସେ ଛନ୍ଦ ଶେଷରେ ।

ଆଶ୍ଚର୍ଯ୍ୟ ପ୍ରଶ୍ନ କମ୍ମାଦି (! ? , ଆଦି)

ଶିକ୍ଷା ପାଶ୍ଚାତ୍ୟଦେଶରୁ ॥41॥

**ଅଭ୍ୟାସ:**

***ବସନ୍ତତିଳକା***

ସଂକ୍ଷେପରେ କହିଲି ଛନ୍ଦର ସର୍ବବିଦ୍ୟା
ଆଭ୍ୟାସ ଆଜିଠୁ ତୁମେ କର ଲେଖିବାରେ ।
ଯେବେ ଉଦାହରଣ ଚାହଁ ତ ଦେଖ ଆଗେ
ଛନ୍ଦୋବିତାନ ସବୁ ବର୍ଗର ଦେଲି ଗଦ୍ୟେ ॥42॥

ନିମ୍ନାନୁବନ୍ଧକୁ ଗଲେ ପୁଣି ଘେନ ଶିକ୍ଷା
ପ୍ରସ୍ତାରରେ ସକଳ ଛନ୍ଦ ରଖା କି ଭାବେ ।
ଏ ପୁସ୍ତକେ ବି ଅଛି ଶେଷକୁ ଏହି ହେତୁ
ତାହା ନ ଜାଣି କରି ପାରିବ ଛନ୍ଦ ଲେଖା ॥43॥
ଅଥବା
ନିମ୍ନସ୍ଥ ସୂଚିରୁ ତୁମେ ପୁଣି ଘେନ ଶିକ୍ଷା
ପ୍ରସ୍ତାରରେ ସକଳ ଛନ୍ଦ ରଖା କି ଭାବେ ।
ମୁଖ୍ୟାଂଶରେ ନ ରଖି ଶେଷକୁ ଦେଲି ଯେଣୁ
ତାହା ନ ଜାଣି କରି ପାରିବ ଛନ୍ଦ ଲେଖା ॥44॥

**https://archive.org/details/LByY_bhasha-pingal-prastar-chhand-divakar-by-mehar-singh-mahant-vayaram-singh/mode/1up**

**ଭାରତୀୟ ଛନ୍ଦଃଶାସ୍ତ୍ର କଥା**

***ଶାର୍ଦ୍ଦୂଳବିକ୍ରୀଡିତମ୍***

ଛନ୍ଦଃଶାସ୍ତ୍ରଟି ଭାରତୀୟ କବିତା ରାଜ୍ୟେ ସଦା ମାନିତା
ତାହା ପାଠ ନିମିତ୍ତ ଦେଲି ମୁଁ ତଳେ ଗଦ୍ୟସ୍ଥ ମୋ ସଂହିତା ।
ଧୀରେ ତାକୁ ଥରେ କି ବା ପୁଣି ଥରେ ଯେ ପାଠରେ ଲାଗିବେ
ନିଶ୍ଚେ ସେ ସହଜେ ସୁବିସ୍ତୃତ ନିଜେ ଅନ୍ତଃସ୍ଥଳେ ଘେନିବେ ॥45॥

# ବିଷୟସୂଚୀ ପୃଷ୍ଠା


**1.** ପ୍ରଥମ ଅଧ୍ୟାୟ - ଛନ୍ଦ ପରିଚୟ 11

**2.** ଦ୍ୱିତୀୟ ଅଧ୍ୟାୟ

ବାର୍ଣ୍ଣିକ ଛନ୍ଦ ପ୍ରକରଣ

**2.1** ସମବାର୍ଣ୍ଣିକ ଛନ୍ଦ 18

**2.2** ଅର୍ଦ୍ଧସମବାର୍ଣ୍ଣିକ ଛନ୍ଦ 38

**2.3** ବିଷମବାର୍ଣ୍ଣିକ ଛନ୍ଦ 40

**3.** ତୃତୀୟ ଅଧ୍ୟାୟ

ମାତ୍ରିକ ଛନ୍ଦ ପ୍ରକରଣ

**3.1** ସମମାତ୍ରିକ ଛନ୍ଦ 42

**3.2** ଅର୍ଦ୍ଧସମମାତ୍ରିକ ଛନ୍ଦ 51

**3.3** ବିଷମମାତ୍ରିକ ଛନ୍ଦ 52

**3.3** ଅନୁଷ୍ଟୁପ୍ ପ୍ରକରଣ 53

**3.5** ବୈତାଳୀୟ ପ୍ରକରଣ 55

**3.6** ଆର୍ଯ୍ୟା ପ୍ରକରଣ 57

**4.** ବୈଦିକ ଛନ୍ଦ ପ୍ରକରଣ 66

**5.** ଛନ୍ଦ ପ୍ରସ୍ତାର 72

**6.** ଗଣଦେବତାଦି ଜ୍ଞାନ 81

**7.** ଛନ୍ଦ ବିଶ୍ୱମୟ

(ବିଦେଶାଗତ ସନେଟ୍) 82

**8.** ଅନ୍ୟାନ୍ୟ ଉପାଦେୟ ଗ୍ରନ୍ଥ ସୂଚନା 93

# ପ୍ରଥମ ଅଧ୍ୟାୟ: ଛନ୍ଦୋପରିଚୟ

1.1 ସଂସ୍କୃତରେ ଓ ଅନ୍ୟାନ୍ୟ ଭାରତୀୟ ଭଷାରେ ତଥା ନେପାଳର ଭାଷାରେ ରଚନା ମୁଖ୍ୟତଃ ଦୁଇ ପ୍ରକାର — (୧) ଗଦ୍ୟ ଓ (୨) ପଦ୍ୟ । ନିଚ୍ଛନ୍ଦ ରଚନା ଗଦ୍ୟ ଓ ଛନ୍ଦୋବଦ୍ଧ ରଚନା ପଦ୍ୟ ନାମରେ ଅଭିହିତ ।

1.2 ଯେଉଁ ରଚନାରେ ଅକ୍ଷର ବର୍ଣ୍ଣ ମାତ୍ରା ଗତି ଯତି ଆଦିର ଶୃଙ୍ଖଳା ଥାଏ ତାହା ଛନ୍ଦ । ଯେଉଁ ଗ୍ରନ୍ଥ ଏ ସବୁ ନିୟମ କହି ଦିଏ ତାହା ଛନ୍ଦଃଶାସ୍ତ୍ର ।

1.3 ଏହା ଛଡା ପରବର୍ତ୍ତୀ କାଳରେ ପ୍ରାନ୍ତୀୟ ଭାଷାମାନଙ୍କରେ ଅନ୍ୟ ଦୁଇ ପ୍ରକାର ସାହିତ୍ୟ ସୃଷ୍ଟି ହେଇଛି - (୩) ଗୀତକବିତା ଓ (୪) ଗଦ୍ୟକବିତା । ଗୀତରେ କେବଳ ଅକ୍ଷର ସଂଖ୍ୟା ଓ ଯତିପାତର ଶୃଙ୍ଖଳା ଥାଏ - କିନ୍ତୁ ବର୍ଣ୍ଣ କି ମାତ୍ରାର ଶୃଙ୍ଖଳା ନ ଥାଏ । ତେଣୁ କବିମାନେ ଏଥିରେ ଦୀର୍ଘ ଉଚ୍ଚାରଣ ଆବଶ୍ୟକ ଥିବା କ୍ଷେତ୍ରରେ ଲଘୁବର୍ଣ୍ଣ ଓ ସଂକ୍ଷିପ୍ତ ଉଚ୍ଚାରଣ ହେବା ସ୍ଥାନରେ ଗୁରୁବର୍ଣ୍ଣର ପ୍ରୟୋଗ ବି କରିପକାନ୍ତି । ଫଳତଃ ଏଗୁଡିକୁ ବୋଲିଲା ବେଳେ ବ୍ୟାକରଣର ହ୍ରସ୍ୱ କି ଦୀର୍ଘ ସ୍ୱର ଜ୍ଞାନ ରହେ ନାହିଁ । ଲଘୁ ଓ ଗୁରୁ ବର୍ଣ୍ଣର ସଚେତନତାବିହୀନ ରଚନାର ପଦଗୁଡିକୁ ନିର୍ଦ୍ଧାରିତ ଅବଧି ଓ ପ୍ରବାହରେ ଆବୃତ୍ତି କରି ହୁଏ ନାହିଁ । ମଧୁରତା ପାଇଁ ପ୍ରାୟତଃ ଏଗୁଡିକୁ ମିତ୍ରାକ୍ଷର କରା ଯାଏ । ଚତୁର୍ଥ ପ୍ରକାର ସାହିତ୍ୟ ଗଦ୍ୟକବିତା ଅତି ଆଧୁନିକ । ଏଥିରେ ଅକ୍ଷର ସଂଖ୍ୟାର ଶୃଙ୍ଖଳା କି ମିତ୍ରାକ୍ଷରୀକରଣ ବି ହୁଏ ନାହିଁ । ନିଚ୍ଛକ ସତ କହିଲେ, ଏଗୁଡିକର ଗଦ୍ୟଠୁ ପ୍ରଭେଦ ମାତ୍ର ଏତିକି ଯେ ଏହାର ଧାଡିଗୁଡିକୁ ଇତସ୍ତତଃ ଭାଙ୍ଗି ତଳକୁ ତଳ ଲେଖା ହେଇ ଥାଏ ଓ ଦୂରରୁ ଚାହିଁଲେ କବିତା ପରି ଦିଶେ । ତେବେ ଏହି ଗୀତ ଓ ଗଦ୍ୟକବିତା ଉଭୟ ବର୍ଣ୍ଣଗତ ଏବଂ ମାତ୍ରାଗତ ଶୃଙ୍ଖଳାରୁ ମୁକ୍ତ ଥିବାରୁ ଏ ଛନ୍ଦଃଶାସ୍ତ୍ରର ଆଲୋଚ୍ୟ ନୁହେଁ ।

1.4 ଭାରତୀୟ ଛନ୍ଦଃଶାସ୍ତ୍ରର ପ୍ରଣେତା ଆଚାର୍ଯ୍ୟ ପିଙ୍ଗଳ । ତାଙ୍କ ପ୍ରଣୀତ ଶାସ୍ତ୍ରର ଦିଗ୍ଦର୍ଶନ ଅନୁଯାୟୀ ଏ ଦେଶର ଛନ୍ଦୋରଚୟିତାମାନେ ଅଦ୍ୟାବଧି ସଂସ୍କୃତ ତଥା ପ୍ରାୟ ସବୁ ପ୍ରାନ୍ତୀୟ ଭାଷାରେ ଛନ୍ଦ ଲେଖୁଛନ୍ତି । ସେହି ପିଙ୍ଗଳ ମୁନିଙ୍କୁ ପ୍ରଣିପାତ କରି ଛନ୍ଦ ଶିକ୍ଷା କରିବା ବିଧେୟ ।

1.5 ଛନ୍ଦରେ ବର୍ଣ୍ଣ ନା ଅକ୍ଷର:
=============

ଛନ୍ଦଃଶାସ୍ତ୍ରର ଦୃଷ୍ଟିରେ ବିଶୁଦ୍ଧ ବ୍ୟଞ୍ଜନ (କ୍ ଖ୍ ଆଦି ଅକ୍ଷର) ବର୍ଣ୍ଣରେ ଗଣ୍ୟ ନୁହନ୍ତି । ଏକୁଟିଆ ସ୍ୱର ଏବଂ ବ୍ୟଞ୍ଜନ ସହ ମିଶି ରହିଥିବା ସ୍ୱରର ନାମ ବର୍ଣ୍ଣ । ଏ ଏଃ ଚେ ଚେଚ୍ — ଏ ସବୁରେ କେବଳ ଏ ସ୍ୱର ହିଁ ବର୍ଣ୍ଣ । ଛନ୍ଦରେ ଅକ୍ଷରଗଣନରେ ବ୍ୟଞ୍ଜନ ପ୍ରତି ଧ୍ୟାନ ଦିଆ ଯାଏ ନାହିଁ ।

1.6 ଲଘୁ ଓ ଗୁରୁ ବର୍ଣ୍ଣ:

==========

ଅଠାରୁ ଔ - ଏହି ୧୩ଟି ସ୍ୱର ଭିତରୁ ଆ ଈ ଊ ୠ ଏ ଐ ଓ ଔ - ଏହି ୮ଟି ଦୀର୍ଘସ୍ୱର ହେଲେ ଗୁରୁବର୍ଣ୍ଣ । ଅ ଇ ଉ ଋ ଌ - ୫ଟି ହ୍ରସ୍ୱସ୍ୱର ଲଘୁବର୍ଣ୍ଣ । ତେବେ କାବ୍ୟରେ କେତେକ ସ୍ଥଳରେ ଉଚ୍ଚାରିତ ହେବାକୁ ଅଧିକ ସମୟ ନେଉଥିବାରୁ ସେହି ସେହି ସ୍ଥଳରେ ହ୍ରସ୍ୱସ୍ୱର ମଧ୍ୟ ଗୁରୁବର୍ଣ୍ଣରେ ଗଣ୍ୟ ହୁଅନ୍ତି । ଉଚ୍ଚାରିତ ହେବାକୁ ଲଘୁ ବର୍ଣ୍ଣ ଏକ ମାତ୍ରା ସମୟ ନେଉ ଥିବା ସ୍ଥଳେ ଗୁରୁ ବର୍ଣ୍ଣ ଦୁଇ ମାତ୍ରା ସମୟ ନିଅନ୍ତି । ସ୍ମରଣୀୟ ଯେ ବ୍ୟଞ୍ଜନବର୍ଣ୍ଣର ମାତ୍ରା ନ ଥାଏ ଯେ ହେତୁ ଏଗୁଡିକର ଉଚ୍ଚାରଣ କାଳ ଶୂନ୍ୟ ।

ଛନ୍ଦରେ ଯେଉଁ ଛ ପ୍ରକାର ବର୍ଣ୍ଣ ଗୁରୁ ସେ ଗୁଡିକ ନିମ୍ନରେ ଦିଆ ଗଲା:

==============================

ନିମ୍ନସ୍ଥ ଛ ପ୍ରକାର ବର୍ଣ୍ଣ ଗୁରୁ ଓ ଅବଶିଷ୍ଟ ଲଘୁବର୍ଣ୍ଣ ।

ସାନୁସ୍ୱାର ବିସର୍ଗୀ ଓ ଦୀର୍ଘସ୍ୱର ହୁଏ ଗୁରୁ
ସଂଯୁକ୍ତହଳଯୁକ୍ତାଗ୍ରେ ପାଦାନ୍ତେ ଗୁରୁ ମାନ୍ୟତା ।

୧) ସାନୁସ୍ୱାର = ଅନୁସ୍ୱାର ଲାଗିଥିବା;
୨) ବିସର୍ଗୀ= ବିସର୍ଗ ଲାଗିଥିବା;
୩) ଦୀର୍ଘସ୍ୱର= ଆଈଊୠ ଏଐଓଔ;
୪) ସଂଯୁକ୍ତାଗ୍ରେ= ସଂଯୁକ୍ତାକ୍ଷର ପୂର୍ବସ୍ଥ;
୫) ହଳଯୁକ୍ତାଗ୍ରେ= ହଳନ୍ତକ ବର୍ଣ୍ଣର ପୂର୍ବସ୍ଥ ବର୍ଣ୍ଣ;
୬) ପାଦାନ୍ତେ= ପାଦଶେଷସ୍ଥ; — ଏହି ଛ ପ୍ରକାର ବର୍ଣ୍ଣ ଗୁରୁ । ସାବଧାନତା: ଯେଉଁ ଛନ୍ଦର ଶେଷସ୍ଥ ବର୍ଣ୍ଣ ଗୁରୁ ହେବାର ବିଧାନ ଅଛି ସେଠି ଏହା ପ୍ରୟୋଗ୍ୟ । ଯେଉଁ ଛନ୍ଦରେ ଶେଷସ୍ଥ ବର୍ଣ୍ଣ ଲଘୁ ହେବାର ବିଧାନ ଅଛି ସେଠି ଗୁରୁବର୍ଣ୍ଣ ଲେଖିଲେ ଲଘୁର ମାନ୍ୟତା ମିଳିବ ନାହିଁ ଓ ଛନ୍ଦୋଭଙ୍ଗ ଦୋଷ ଲାଗିବ ।

ମାତ୍ରା କହିଲେ ଉଚ୍ଚାରଣସମୟକୁ ବୁଝାଏ । ଲଘୁ ବର୍ଣ୍ଣ ଉଚ୍ଚାରଣରେ ଯେତିକି ସମୟ ନିଏ ତାହା ଏକ ମାତ୍ରା ଓ ଗୁରୁ ବର୍ଣ୍ଣ ଯେତିକି ସମୟ ନିଏ ତାହା ଦୁଇ ମାତ୍ରା । ତେଣୁ ଲଘୁ ବର୍ଣ୍ଣକୁ ଏକମାତ୍ରିକ ଓ ଗୁରୁ ବର୍ଣ୍ଣକୁ ଦ୍ୱିମାତ୍ରିକ ବର୍ଣ୍ଣ ବୋଲି ମଧ୍ୟ କୁହାଯାଏ ।

==============================

1.7 ପ୍ରଣିଧାନ୍ୟ:

୧- ବର୍ଣ୍ଣଗୁଡିକର ଉଚ୍ଚାରଣରେ ଅଳ୍ପ ବା ଅଧିକ ସମୟ ଦେବା ନିୟମ ଛନ୍ଦଃଶାସ୍ତ୍ର ଲଦେ ନାହିଁ । ଦୀର୍ଘସ୍ୱରକୁ ଦୀର୍ଘ ଉଚ୍ଚାରଣ କରିବା ବ୍ୟାକରଣର ନିୟମ । ତଭିନ୍ନ ପଦ୍ୟର ଆବୃତ୍ତି ବେଳେ ଯେଉଁ ଯେଉଁ ସ୍ଥଳବିଶେଷରେ ହ୍ରସ୍ୱ ସ୍ୱରକୁ ମଧ୍ୟ ଅଧିକ ସମୟ ଦେବାକୁ ମନୁଷ୍ୟର

ସ୍ୱରତନ୍ତ୍ରୀ ବାଧ କରେ ସେଗୁଡିକୁ ମଧ ସେହି ସେହି ସ୍ଥଳବିଶେଷରେ ଗୁରୁ ବର୍ଣ୍ଣ ବୋଲି ଛନ୍ଦଃଶାସ୍ତ୍ର ସ୍ୱୀକୃତି ଦିଏ ମାତ୍ର ଓ ଜଣେଇ ଦିଏ ମଧ ।

୨- ଛନ୍ଦ ପାଠ ବେଳେ ମଧ୍ୟେ ମଧ୍ୟେ ଶ୍ୱାସକ୍ରିୟା ନିମନ୍ତେ ନେବାକୁ ପଡୁଥିବା ବିରତି ବା ଯତିପାତ (pause) ମଧ ଛନ୍ଦଃଶାସ୍ତ୍ର ଲଦେ ନାହିଁ, କେବଳ କେଉଁ ଛନ୍ଦରେ କେଉଁଠାରେ ସେ ସାମୟିକ ବିରତି ବା ଯତି ଆବଶ୍ୟକ ହେବ ତାହା ସୂଚେଇ ଦିଏ ।

================================

1.8 ଏ ପୁସ୍ତକରେ ଲଘୁ ବା ଏକମାତ୍ରିକ ବର୍ଣ୍ଣ ନିମନ୍ତେ 1 ଓ ଗୁରୁ ବା ଦ୍ୱିମାତ୍ରିକ ବର୍ଣ୍ଣ ନିମନ୍ତେ 2 ପ୍ରତୀକ ଭାବରେ ନିଆ ଯାଉଛି । କେହି କେହି ଲଘୁ ପାଇଁ S (short ରୁ) ଗୁରୁ ବର୍ଣ୍ଣ ପାଇଁ L (longରୁ) ବ୍ୟବହାର କରୁଛନ୍ତି । କେତେ ଗ୍ରନ୍ଥରେ ଅନ୍ୟ ପ୍ରକାର ଚିହ୍ନ ମଧ ବ୍ୟବହାର ହେଉଛି । ପ୍ରାଚୀନ ଛନ୍ଦଃଶାସ୍ତ୍ରରେ ଲଘୁ ପାଇଁ ଇଂରାଜୀର i ପରି ଓ ଗୁରୁ ବର୍ଣ୍ଣ ପାଇଁ ଇଂରାଜୀର s ପରି ଚିହ୍ନର ପ୍ରୟୋଗ ଥିଲା ।

1.9 ଛନ୍ଦର ପାଦଗୁଡିକର ଦୈର୍ଘ୍ୟ ଓ ଗତିକୁ ସୁନିୟୋଜିତ ରଖିବାକୁ ହେଲେ ବର୍ଣ୍ଣଗୁଡିକର ଲଘୁ-ଗୁରୁ ଭେଦ ଓ ମାତ୍ରା ଭଲ ଭାବେ ବୁଝି ମନେ ରଖି ନିର୍ଭ୍ରମ ପ୍ରୟୋଗ କରିବାକୁ ପଡିବ ।

ଉଦାହରଣ:

| ଶବ୍ଦ | ମାତ୍ରା ବିଚାର |
|---|---|
| କସ - | କରେ 1 ମାତ୍ରା, ସରେ 1 ମାତ୍ରା । |
| କଂସ - | କଂରେ 2, ସରେ 1 ମାତ୍ରା । |
| ବଂଶୀ - | ବଂରେ 2, ଶୀରେ 2 ମାତ୍ରା । |
| ଚକ - | ଚରେ 1 ଓ କରେ 1 ମାତ୍ରା । |
| ଦୁଃଖ - | ଦୁଃରେ 2 ଖରେ 1 ମାତ୍ରା । |
| ଚୁପ୍ - | ଚୁରେ 2 ମାତ୍ରା ପ୍‌ରେ 0 ମାତ୍ରା । |
| ଭବିଷ୍ୟତ୍ - | ଭରେ 1, ବିରେ 2, ଷ୍ୟରେ 2, ତ୍‌ରେ 0 ମାତ୍ରା । |
| ହଠାତ୍ - | ହରେ 1, ଠାରେ 2, ତ୍‌ରେ 0 ମାତ୍ରା । |

ମାତ୍ରିକ ଓ ବାର୍ଣ୍ଣିକ ଛନ୍ଦ କଣ:

1.10 ବୈଦିକ ଛନ୍ଦଠୁ ଭିନ୍ନ ଆମ ଛନ୍ଦ ଶାସ୍ତ୍ରରେ ଦୁଇ ପ୍ରକାର ଲୌକିକ ଛନ୍ଦ ଅଛି - ମାତ୍ରିକ ଛନ୍ଦ ଓ ବାର୍ଣ୍ଣିକ ଛନ୍ଦ । ମାତ୍ରିକ ଛନ୍ଦରେ ମାତ୍ରା ଗଣନା ହୁଏ । ବାର୍ଣ୍ଣିକ ଛନ୍ଦରେ ପ୍ରତି ଧାଡିରେ

ଯେଉଁଠି ଲଘୁ ବା ଗୁରୁ ଯେଉଁ ବର୍ଣ୍ଣର ବିଧାନ ଥିବ ସେଠି ସେହି ବର୍ଣ୍ଣ ଲେଖିବାକୁ ପଡିବ ଅର୍ଥାତ୍ ପ୍ରତି ଧାଡି ବା ପାଦରେ ଲଘୁଗୁରୁ ବର୍ଣ୍ଣକ୍ରମ ଶୃଙ୍ଖଳିତ ରହିବ ।

ସମ ଅର୍ଦ୍ଧସମ ଓ ବିଷମ ଛନ୍ଦ
================

1.11 ଉଭୟ ବାର୍ଣ୍ଣିକ ଓ ମାତ୍ରିକ ଛନ୍ଦରେ ଚାରି ପାଦର ବିଧାନ ଭିତ୍ତିରେ ତିନିଟି ଭେଦ ହେଲା - ସମ ଅର୍ଦ୍ଧସମ ଓ ବିଷମ ।

(୧) ଚାରିଟି ଯାକ ପାଦରେ ସମସ୍ତ ବିଧାନ ବା ନିୟମ ସମାନ ହେଲେ ତାହା ସମଛନ୍ଦ ।

(୨) ଯଦି ଚାରିଟି ଯାକ ପାଦର ସମସ୍ତ ବିଧାନ ସମାନ ନାହିଁ କିନ୍ତୁ ପ୍ରଥମ ଓ ତୃତୀୟ ପାଦର ବିଧାନ ଏକା ପୁଣି ଦ୍ୱିତୀୟ ଓ ଚତୁର୍ଥ ପାଦର ବିଧାନ ମଧ୍ୟ ଏକା ଅର୍ଥାତ୍ ପଦଟିର ପ୍ରଥମାର୍ଦ୍ଧର ସମସ୍ତ ବିଧାନ ସହ ଦ୍ୱିତୀୟାର୍ଦ୍ଧର ସମସ୍ତ ବିଧାନ ଏକା ଥିବ ତାହା ଅର୍ଦ୍ଧସମ ଛନ୍ଦ ।

(୩) ଯଦି ପ୍ରଥମାର୍ଦ୍ଧ ଓ ଦ୍ୱିତୀୟାର୍ଦ୍ଧର ସମସ୍ତ ବିଧାନ ଏକା ନ ଥିବ ତେବେ ତାହା ବିଷମ ଛନ୍ଦ । ଯଥା, ଯଦି ପାଦ ଏକ ଦୁଇ ତିନିର ବିଧାନ ଏକା ଥିଲେ ହେଁ ପାଦ ତିନିଠାରୁ ପାଦ ଚାରି ଭିନ୍ନ ଥିବ ଅଥବା ପାଦ ଏକ ଦୁଇ ଚାରିର ବିଧାନ ଏକ ହେଲେ ହେଁ ପାଦ ତିନିର ବିଧାନ ଭିନ୍ନ ଥିବ ତେବେ ମଧ୍ୟ ତାହା ବିଷମ ଛନ୍ଦ ।

ଗଣ:

1.12 ଛନ୍ଦଃଶାସ୍ତ୍ରରେ ବର୍ଣ୍ଣକ୍ରମର ଚର୍ଚ୍ଚା ଗଣରେ ହୁଏ । ବାର୍ଣ୍ଣିକ ଛନ୍ଦର ବର୍ଣ୍ଣବିନ୍ୟାସ ବା ବର୍ଣ୍ଣ ସଜେଇବା ନିୟମ ଗଣକ୍ରମର ଶୃଙ୍ଖଳାରେ ଲେଖା ଯାଉଥିବାରୁ ଏହାର ଅନ୍ୟ ନାମ ଗଣଛନ୍ଦ । ଗଣ କହିଲେ ତିନିଟି ବର୍ଣ୍ଣର ସମାହାରକୁ (set of three syllablesକୁ) ବୁଝାଏ । ଏହି ତିନି ବର୍ଣ୍ଣରେ ଲଘୁ ଓ ଗୁରୁବର୍ଣ୍ଣର ସ୍ଥିତିକୁ ନେଇ ସମ୍ଭବ ମୋଟ ଆଠଟି ବର୍ଣ୍ଣବିନ୍ୟାସକୁ ନେଇ ଆଠ ଗଣ (set)ର ନାମକରଣ ହେଇଛି । ସେଗୁଡିକ ହେଲା:

ନଗଣ= ସର୍ବଲଘୁ ବା 111 ଯଥା ରସନ
ସଗଣ= ଅନ୍ତଗୁରୁ ବା 112 ଯଥା ରସନା
ଜଗଣ= ମଧ୍ୟଗୁରୁ ବା 121 ଯଥା ନିବାସ
ୟଗଣ= ଆଦିଲଘୁ ବା 122 ଯଥା ନିବାସୀ
ଭଗଣ= ଆଦିଗୁରୁ ବା 211 ଯଥା ଭାରତ
ରଗଣ= ମଧ୍ୟଲଘୁ ବା 212 ଯଥା ଭାରତୀ
ତଗଣ= ଅନ୍ତଲଘୁ ବା 221 ଯଥା ଆବାସ
ମଗଣ= ସର୍ବଗୁରୁ ବା 222 ଯଥା ଆବାସୀ

ଏହି ଅଷ୍ଟଗଣରୁ କାହା ସଂଗଠନ କଣ ମନେ ରଖିବା ଉପାୟ କଣ? ଏଥିପାଇଁ ଶାସ୍ତ୍ରୀୟ ଉପାୟ ହେଲା ନିମ୍ନସ୍ଥ ଦଶଟି ଅକ୍ଷର ଦତ୍ତ କ୍ରମାନୁସାରେ ମନେ ରଖି ଲେଖିବାକୁ ପଡିବ ।

ୟ ମା ତା ରା ଜ ଭା ନ ସ ଲ ଗା

ଏଥିରେ ଯେଉଁଗଣ ନାମ ଆସିବ ସେହି ଅକ୍ଷର ଓ ତା ଡାହାଣର ଦୁଇଟି ଅକ୍ଷର ପଢି ଦେଲେ ସେ ଗଣର ପରିଚୟ ମିଳିବ । ଯଥା ମଗଣ କଣ କହିଲେ ମାତାରା  ପଢିବାକୁ ହେବ । ଏ ସବୁ ଅକ୍ଷରରେ ଆକାର (ଗୁରୁବର୍ଣ୍ଣ) ଥିବାରୁ ଜାଣି ହେବ ମଗଣ ହେଲା ସର୍ବଗୁରୁ ଅର୍ଥାତ୍ ଗୁରୁ-ଗୁରୁ-ଗୁରୁ । ସେହି ପରି ଜଗଣ ଜାଣିବାକୁ ଜଭାନ ପଢିବାକୁ ହେବ । ଜଭାନରେ କେବଳ ଭରେ ଆକାର ଅଛି । ତେଣୁ ଜଗଣ ମଧ୍ୟଗୁରୁ ଅର୍ଥାତ୍ ଏଥିରେ ବର୍ଣ୍ଣକ୍ରମ ହେଲା ଲଘୁ-ଗୁରୁ-ଲଘୁ । ସଗଣ ପାଇଁ ସଲଗା ପଢିଲେ କେବଳ ଶେଷ ଗରେ ଆକାର ଥିବାରୁ ଏହା ଅନ୍ତଗୁରୁ ବା ଲଘୁ-ଲଘୁ-ଗୁରୁ ।

ମାତ୍ରିକ ଛନ୍ଦରେ ଗଣ ଗୁଡିକ ବାର୍ଣ୍ଣିକ ଗଣଠାରୁ ଭିନ୍ନ । ମୋଟ  ମାତ୍ରା ସଂଖ୍ୟା ଆଧାରରେ ମାତ୍ରିକ ଗଣଗୁଡିକର ନାମକରଣ ହେଇଛି । ଏଗୁଡିକ ହେଲା

ଟଗଣ - ମୋଟ 6 ମାତ୍ରାର ସମାହାର
ଠଗଣ - ମୋଟ 5 ମାତ୍ରାର ସମାହାର
ଡଗଣ - ମୋଟ 4 ମାତ୍ରାର ସମାହାର
ଢଗଣ - ମୋଟ 3 ମାତ୍ରାର ସମାହାର ଓ
ଣଗଣ - ମୋଟ 2 ମାତ୍ରାର ସମାହାର ।

1.13 ବେଦୋକ୍ତ ଛନ୍ଦ ଥିଲା ଆଦ୍ୟକ ବା ପ୍ରକ୍ରିୟାଧୀନ ସ୍ତରର (of the primitive or formative stage) । ଏଥିରେ ଲଘୁଗୁରୁ ବର୍ଣ୍ଣର ଶୃଙ୍ଖଳା କି ମାତ୍ରା (ବର୍ଣ୍ଣଗୁଡିକର ଉଚ୍ଚାରଣକାଳ) ଗଣନର ବ୍ୟବସ୍ଥା ନ ଥିଲା । ତେଣୁ ପରେ ପରେ ବାର୍ଣ୍ଣିକ ଓ ମାତ୍ରିକ ଛନ୍ଦର ଉଦ୍ଭାବନ ହେବାରେ ବୈଦିକ ଛନ୍ଦ କେବଳ ବେଦରେ ହିଁ ରହିଲା । କବିମାନେ ଲୌକିକ (ବାର୍ଣ୍ଣିକ ଓ ମାତ୍ରିକ) ଛନ୍ଦ ଲେଖିଲେ । ଆଦିକବି ବାଲ୍ମୀକିଙ୍କ ରାମାୟଣ ଲୌକିକ ଛନ୍ଦରେ ହିଁ ରଚିତ । ସେ ଦିନୁ ଏ ଯାଏ ଛନ୍ଦ ରଚନା କହିଲେ ଲୌକିକ ଛନ୍ଦକୁ ହିଁ ବୁଝାଏ ।

ବାର୍ଣ୍ଣିକ ଛନ୍ଦ ପରିଚୟ
============

1.14 ବାର୍ଣ୍ଣିକ ଛନ୍ଦରେ ପ୍ରତି ପାଦରେ ଲଘୁ ସ୍ଥାନରେ ଲଘୁ ଓ ଗୁରୁ ସ୍ଥାନରେ ଗୁରୁ ବର୍ଣ୍ଣ ଲେଖିବାକୁ ପଡେ । ନିମ୍ନସ୍ଥ ଉଦାହରଣରେ ପଦଟିର ୪ଟି ଯାକ ପାଦରେ ବର୍ଣ୍ଣକ୍ରମ ଓ ଗଣ କ୍ରମ ଏହିପରି ଅଛି:

ଗଣ: ନଗଣ ନଗଣ ମଗଣ ଯଗଣ ଯଗଣ
ବର୍ଣ୍ଣ: 111/111/22••,2/122/122
ଏହି ପରି ୧୫ ଅକ୍ଷର । ଛନ୍ଦୋନାମ ମାଳିନୀ ।

ତୁମଠି ଫୁଲଶରତ୍ୱ ଖ୍ୟାତି ଚନ୍ଦ୍ରେ ତମୋହା
ତ୍ରୁଟିମୟ ଦୁଇ ସଂଜ୍ଞା ରିକ୍ତବାଲ୍ଲଭ୍ୟ ପାଶେ ।
ଜଳଧିଜ ହିମଗର୍ଭେ ଉଦ୍ୱହେ ବହ୍ନିଜିହ୍ୱା
ତୁମର ବି ଫୁଲ ଶର୍ଯ୍ୟା ବଜ୍ରତୁଲ୍ୟ ପ୍ରବେଶେ ।

1.15 ଏହା ବାର୍ଣ୍ଣିକ ଛନ୍ଦ ବା ଗଣ ଛନ୍ଦ । ୧୫ ଅକ୍ଷରର ଛନ୍ଦରେ ମଧ୍ୟ ବର୍ଣ୍ଣଶୃଙ୍ଖଳା ଅନେକ ପ୍ରକାର ହେଇ ପାରିବ । ସେଥିରୁ ମାଳିନୀ ଅନ୍ୟତମା । ଗୋଟିଏ ବି ଅକ୍ଷର ଲଘୁ ଜାଗାରେ ଗୁରୁ ବର୍ଣ୍ଣ ହେଲେ ବା ଗୁରୁ ଜାଗାରେ ଲଘୁ ବର୍ଣ୍ଣ ହେଲେ ତାହାର ନାମ ବଦଳି ଯିବ । ଯେଉଁ ଛନ୍ଦରେ ପଦଟି ଲେଖା ହେବ ୪ଟି ଯାକ ପାଦରେ ସେହି ଛନ୍ଦର ବର୍ଣ୍ଣକ୍ରମ ରହିବ । ଏଥିରେ ଗୋଟିଏ ବି ବ୍ୟତିକ୍ରମ ହେଲେ ଛନ୍ଦୋଭଙ୍ଗ ଦୋଷ ଲାଗିବ ।

1.16 ଅକ୍ଷର ସଂଖ୍ୟା ଭିତ୍ତିରେ ଛନ୍ଦଗୁଡିକର ବିଭିନ୍ନ ଶ୍ରେଣୀ ବିଭାଗ ହେଇଛି । ତଳେ ସେ ସବୁ ଶ୍ରେଣୀ ନାମ ଦିଆ ହେଲା ।

| ପ୍ରତି ପାଦର ବର୍ଣ୍ଣ ସଂଖ୍ୟା | | | ଶ୍ରେଣୀ ନାମ |
|---|---|---|---|
| ======== | | | |
| 01 | — | — | ଉକ୍ତା |
| 02 | — | — | ଅତ୍ୟୁକ୍ତା |
| 03 | — | — | ମଧ୍ୟା |
| 04 | — | — | ପ୍ରତିଷ୍ଠା |
| 05 | — | — | ସୁପ୍ରତିଷ୍ଠା |
| 06 | — | — | ଗାୟତ୍ରୀ |
| 07 | — | — | ଉଷ୍ଣିକ୍ |
| 08 | — | — | ଅନୁଷ୍ଟୁପ୍ |
| 09 | — | — | ବୃହତୀ |
| 10 | — | — | ପଙ୍କ୍ତି |

11 — — ତ୍ରିଷ୍ଟୁପ୍
12 — — ଜଗତୀ
13 — — ଅତିଜଗତି
14 — — ଶକ୍ୱରୀ
15 — — ଅତିଶକ୍ୱରୀ
16 — — ଅଷ୍ଟି
17 — — ଅତ୍ୟଷ୍ଟି
18 — — ଧୃତି
19 — — ଅତିଧୃତି
20 — — କୃତି
21 — — ପ୍ରକୃତି
22 — — ଆକୃତି
23 — — ବିକୃତି
24 — — ସଂକୃତି
25 — — ଅତିକୃତି
26 — — ଉତ୍କୃତି
27 ଓ ତଦୁର୍ଦ୍ଧ୍ୱ — ଦଣ୍ଡକ

ମାତ୍ରିକ ଛନ୍ଦ ପରିଚୟ
============

1.17 ମାତ୍ରିକ ଛନ୍ଦରେ ମାତ୍ରା ଗଣନ ଶୃଙ୍ଖଳା ରହେ । ନିମ୍ନ ପଦରେ ପ୍ରଥମ ଓ ତୃତୀୟ ପାଦରେ ୧୩-୧୩ ମାତ୍ରା ଏବଂ ଦ୍ୱିତୀୟ ଓ ଚତୁର୍ଥ ଚରଣରେ ୧୧-୧୧ ମାତ୍ରା ରହିବା ଶୃଙ୍ଖଳା ଅଛି ।

ଜାତି ନ ପୂଛୋ ସାଧୁକୀ (୧୩ ମାତ୍ରା)
ପୂଛ ଲୀଜିୟେ ଜ୍ଞାନ । (୧୧ ମାତ୍ରା)
ମୋଲ କରୋ ତଲବାରକା (୧୩ ମାତ୍ରା)
ପଡା ରହନ ଦୋ ମ୍ୟାନ । (୧୧ ମାତ୍ରା)

ଏହା ଦୋହା ଛନ୍ଦ । ଦୋହାରେ ଅନ୍ୟ କିଛି ନିୟମ ବି ଅଛି, ମାତ୍ରିକ ଛନ୍ଦ ବିଭାଗରେ ଜାଣିବେ । ମାତ୍ରାଗତ ବିଧାନ ଥିବା ହେତୁ ଏହା ମାତ୍ରିକ ଛନ୍ଦ ।

# ଦ୍ୱିତୀୟ ଅଧ୍ୟାୟ: ବାର୍ଣ୍ଣିକ ଛନ୍ଦ ପ୍ରକରଣ

# 2.1 ସମବାର୍ଣ୍ଣିକ ଛନ୍ଦ ବା ବୃତ୍ତ ପ୍ରକରଣ

(୧) ପ୍ରତିଷ୍ଠା (ଅକ୍ଷର - ୪)

ଛନ୍ଦ: ଧାରୀ ରଗଣ + ଲ 212-1 (4/11)

ଏହି ବିଶ୍ୱ କର୍ମ ଭୂଇଁ
କର୍ମଠାରୁ ଧର୍ମ ନାହିଁ ||1
କର୍ମ ଲାଗି ପାଠ ମାତ୍ର,
ତେଣୁ ହେବୁ ଯୋଗ୍ୟ ଛାତ୍ର ||2

ଅନ୍ୟାନ୍ୟରୁ କତିପୟ:

====================

ଛନ୍ଦ: ନିଶି ଭଗଣ+ଲ 211-1(4/15)
ଛନ୍ଦ: କଳା ଭଗଣ+ଗା 211-2 (4/7)
ଛନ୍ଦ: ରଙ୍ଗୀ ରଗଣ+ଗା 212-2 (4/3)
ଛନ୍ଦ: କୃଷ୍ଣା ତଗଣ+ଲ 221-1(4/13)

====================

(୨) ସୁପ୍ରତିଷ୍ଠା (ଅକ୍ଷର - ୫)

ଛନ୍ଦ: ବାର୍ଦ୍ଧି ଜଗଣ+ଗାଲ 121-21 (5/22)

ଅଗାଧ ମୀର ବତାସ ଧୀର
ଅକାତ ନୀର ହତାଶ ବୀର ।

ଛନ୍ଦ: ଯଶୋଦା, ଜଗଣ+ଗା,ଗା 121+22 (5/6)

ଅଦମ୍ୟ ରାତ୍ରୀ, ଉଦାତ୍ତ ଗୀତେ
ଅବଶ୍ୟ ଯାତ୍ରୀ ଉଦାସ ଚିତ୍ତେ ।

ଅନ୍ୟାନ୍ୟରୁ କତିପୟ:

====================

ଛନ୍ଦ: ବରୀୟ ୟଗଣ+ଲଲ 122+11 (5/26)
ଛନ୍ଦ: ବୈନସ ରଗଣ+ଲଗା 212+12 (5/11)
ଛନ୍ଦ: କରଳି ନଗଣ+ଗାଗା 111+22 (5/8)
ଛନ୍ଦ: ନାୟକ ସଗଣ+ଲଲ 112+11 (5/28)

ଛନ୍ଦ: ସମ୍ମୋହା ମଗଣ+ଗାଗା 222+22 (5/1)

====================

(୩) ଗାୟତ୍ରୀ (ଅକ୍ଷର - ୬)

ଛନ୍ଦ: ବସୁମତୀ, ତଗଣ ସଗଣ 221/112

ପୁଷ୍ପାଦି ଖଚିତା ଶୃଙ୍ଗାରିବନିତା
ତା ହସ୍ତରଚିତା ଏ ପ୍ରେମକବିତା ।

ଅନ୍ୟାନ୍ୟରୁ କତିପୟ:

====================

ଛନ୍ଦ: କର୍ମଦା ରଗଣ ସଗଣ 212/112 (6/27)
ଛନ୍ଦ: ଶଙ୍ଖନାଦୀ ୟଗଣ ୟଗଣ 122/122 (6/10)
ଛନ୍ଦ: ନଦୀ ଭଗଣ ଭଗଣ 211/211 (6/55)
ଛନ୍ଦ: ଶଶିବଦନା ନଗଣ ୟଗଣ 111/122 (6/16)
ଛନ୍ଦ: ବିଦ୍ୟୁଲ୍ଲେଖା ମଗଣ ମଗଣ 222/222 (6/1)

====================

(୪) ଉଷ୍ଣିକ୍ (ଅକ୍ଷର - ୭)

ଛନ୍ଦ: ହଂସମାଳା (7/20)
ସଗଣ ରଗଣ+ଗା 112/212+2

ସହସା ଜ୍ୟୋତି ରେଖା କହିଲା ଜାଗ ଏବେ
ସରିଲା ସ୍ୱପ୍ନ ଦେଖା ଚଳିବା ଅର୍ଥଲାଭେ । 1
ରହିଲେ ଜୀବନେ ନା ମିଶିବା ପୁଣ୍ୟ କାମେ
ଅଳସେ କେହି କେବେ ସୁଖସଂଜ୍ଞା ନ ଜାଣେ । 2

ଅନ୍ୟାନ୍ୟରୁ କତିପୟ:

====================

ଛନ୍ଦ: ସମାନିକା (7/43)
ରଗଣ ଜଗଣ+ଗା 212/121+2

ଛନ୍ଦ: ଲୀଳା (7/39)
ଭଗଣ ତଗଣ+ଗା 211/221+2

ଛନ୍ଦ: ସାମିକା (7/83)

ରଗଣ ରଗଣ+ଲ 212/212+1

ଛନ୍ଦ: କୁମାରଲଳିତା (7/30)
ଜଗଣ ସଗଣ+ଗା 121/112+2
====================

(୫) ଅନୁଷ୍ଟୁପ୍ (ଅକ୍ଷର - ୮)

ଛନ୍ଦ: ନରାଚିକା (8/85)
ତଗଣ ରଗଣ ଲଗା 221/121+12

ବିଦ୍ୱାନ୍, କ୍ଷିତୀଶ ମଧ୍ୟରେ ଥାଏ କି ବା ସମାନତା ।
ରାଜାର ମାନ ଦେଶରେ ମାନେ ବୁଧଙ୍କୁ ଏ ଧରା ।

ଅନ୍ୟାନ୍ୟରୁ କତିପୟ:
====================
ଛନ୍ଦ: ପଦ୍ମମାଳା (8/19)
ରଗଣ ରଗଣ+ଗାଗା 212/212+22

ଛନ୍ଦ: ପ୍ରମାଣିକା (8/85)
ଜଗଣ ରଗଣ+ଗାଗା 121/212+12

ଛନ୍ଦ: ବିଦ୍ୟୁନ୍ମାଳା (8/1)
ମଗଣ ମଗଣ+ଗାଗା 222/222+22
====================

(୬) ବୃହତୀ (ଅକ୍ଷର - ୯)

ଛନ୍ଦ: ଅର୍ଦ୍ଧକଳା (9/220)
ସଗଣ ସଗଣ ସଗଣ 122/122/122

ସହସା ବରଷାରୁ ରସା କି ଦଶା ସହିଲା ସୁଜନେ ।
ଜଳଭୂ ସଲିଳେ ପ୍ରଚଳେ ଛଳ ଚଞ୍ଚଳ ଉଚ୍ଛଳନେ ॥ 1

ଅନ୍ୟାନ୍ୟରୁ କତିପୟ:
====================
ଛନ୍ଦ: ରତିପଦ (ମଦନକ)(9/256)
ନଗଣ ନଗଣ ସଗଣ 111/111/112

ଛନ୍ଦ: ବିଶଲ୍ୟ (9/74)
ୟଗଣ ୟଗଣ ୟଗଣ 122/122/122

ଛନ୍ଦ: ନିଷଧ (9/215)
ଭଗଣ ରଗଣ ସଗଣ 211/212/112

ଛନ୍ଦ: ବାରିଧିଯାନ (9/359)
ଭଗଣ ତଗଣ ଜଗଣ 211/221/121

ଛନ୍ଦ: ଅର୍ଦ୍ଧକ୍ଷାମା (9/97)
ମଗଣ ତଗଣ ୟଗଣ 222/221/122
===================

(୭) ପଙ୍କ୍ତି (ଅକ୍ଷର - ୧୦)

ଛନ୍ଦ: ଉପସ୍ଥିତା (10/365)
ତଗଣ ଜଗଣ ଜଗଣ+ଗା 221/121/121+ 2

ଏଠାରୁ ମୁଁ ଚାଲି ଯିବା ପରେ ନିଶ୍ଚେ ଥିବ ମୋର ପଢା ଘରେ
ନିସ୍ତେଜସ ପୁଷ୍ପର ପାଖୁଡା ମର୍ମେ ଭରି ଗୀତର ଚାଙ୍ଗୁଡା: ୧

ଅନ୍ୟାନ୍ୟ କତିପୟ:
===================
ଛନ୍ଦ: ଅନୁଚାୟିତା (10/352)
ନଗଣ ସଗଣ ଜଗଣ+ଗା 111/112/121+2

ଛନ୍ଦ: ସରାବିକା (10/342)
ଜଗଣ ରଗଣ ଜଗଣ+ଗା 121/212/121+2

ଛନ୍ଦ: ଶେଫାଳୀ (10/2)
ୟଗଣ ମଗଣ ମଗଣ+ଗା 122/222/222+2
ଛନ୍ଦ: ବିଶାଳାନ୍ତିକ (10/293)
ତଗଣ ତଗଣ ତଗଣ+ଗା 221/221/221+2

ଛନ୍ଦ: ମତ୍ତା 10/241)
ମଗଣ ଭଗଣ( ସଗଣ+ଗି 222/2••11/112+2 ଯତି: 4,6
===================

(୮) ତ୍ରିଷ୍ଟୁପ୍ (ଅକ୍ଷର -୧୧)

ଛନ୍ଦ: ଉପେନ୍ଦ୍ରବଜ୍ରା (11/358)
ଜଗଣ ତଗଣ ଜଗଣ+ଗାଗା 121/221/121+22

ଅସଭ୍ୟଭାଷୀ ଶିଶୁ ରାଜଦାଣ୍ଡେ
ସିଙ୍ଘାଣି ନାକେ ତନୁ ବସ୍ତ୍ରହୀନା ।
ଶରୀର କଣ୍ଟା କିଛି ନାହିଁ ଶିକ୍ଷା
କି ହେବ ଯେ ଦେଶର ସେ ଭବିଷ୍ୟତ୍ ।

ଛନ୍ଦ: ଇନ୍ଦ୍ରବଜ୍ରା (11/357)
ତଗଣ ତଗଣ ଜଗଣ+ଗାଗା 221/221/121+22

ରାତ୍ରି ପ୍ରତିକ୍ରାନ୍ତ । ଦିଗନ୍ତ ମାଥେ
ସିନ୍ଦୂରବିନ୍ଦୁ ପ୍ରତିଭାତ ଭାସ୍ୱତ୍ ।
ଆକାଶବକ୍ଷେ ସହଜ ସ୍ୱଭାବେ
ଦେଖେ ଧରିତ୍ରୀବଦନେ ବିବସ୍ୱତ୍ ।

ଅନ୍ୟାନ୍ୟ କତିପୟ:
====================
ଛନ୍ଦ: ଶାରଦା (11/302)
ଜଗଣ ଭଗଣ ତଗଣ+ଗାଗା 121/211/221+22

ଛନ୍ଦ: ଶାରଦା (11/439)
ଜଗଣ ଭଗଣ ତଗଣ+ଗାଗା 121/211/221+22

ଛନ୍ଦ: ଦୋଧକ (11/439)
ଭଗଣ ଭଗଣ ଭଗଣ ଗାଗା 211/211/211+22

ଛନ୍ଦ: ରଥୋଦ୍ଧତା (11/699)
ରଗଣ ନଗଣ ରଗଣ ଲଗା 212/111/212+12

ଛନ୍ଦ: ଭ୍ରମରବିଳସିତଂ (11/1009)
ମଗଣ ଭଗଣ ନଗଣ+ଲଗା 222/2••11/111+12 ଯତି: 4,7

ଛନ୍ଦ: ଶାଳିନୀ (11/269)
ମଗଣ ତଗଣ ତଗଣ+ଗାଗା 222/221/221+22

===================
ଜ୍ଞାତବ୍ୟ: ଉପଜାତି ଛନ୍ଦ
==============
କେତେକ ଛନ୍ଦ ଯେଉଁଗୁଡିକର ପାଦର ସମ୍ମିଶ୍ରଣରେ ଉପଜାତୀୟ ଛନ୍ଦ ଗଠିତ ହେବା ଶାସ୍ତ୍ରସମ୍ମତ । ସେଥି ମଧ୍ୟରେ ଇନ୍ଦ୍ରବଜ୍ରା ଓ ଉପେନ୍ଦ୍ରବଜ୍ରାକୁ ନେଇ ଉପଜାତି ସୃଷ୍ଟି ବହୁଳ ମାତ୍ରାରେ ହୁଏ । ଯଥା:

କୁମ୍ଭୀରଟେ ବା ବଢି ପାରି ନାହିଁ
ଶାର୍ଦ୍ଦୂଳ ଯେହ୍ନେ ପରମାଂସ ଖାଏ ।
ମନୁଷ୍ୟ ସଙ୍ଗେ ସଦନେ ନିବାସୀ
ତଳେ ତୁମେ, ସେ ଉପରେ ହିଁ ଥାଏ ॥

ଏହା ଉପଜାତିର ଛନ୍ଦ । ଏଥିରେ ପାଦ ପାଦ 1 ଓ 2ରେ ଇନ୍ଦ୍ରବଜ୍ରାର ବର୍ଣ୍ଣକ୍ରମ ଅଛି ତ ପାଦ 2 ଓ 3ରେ ଉପେନ୍ଦ୍ରବଜ୍ରାର ବର୍ଣ୍ଣକ୍ରମ ଅଛି ।

(୯) ଜଗତୀ (ଅକ୍ଷର -୧୨)

ଛନ୍ଦ: ଭୁଜଙ୍ଗପ୍ରୟାତଂ (12/586)
ୟଗଣ ୟଗଣ ୟଗଣ ୟଗଣ 122/122/122/122

ଶିରେ ଯାର ତାରା ନିଶାନାଥ ଟୀକା
ଯିଏ ଧୈର୍ଯ୍ୟ ସଙ୍ଗେ ଦିଏ ମୌନ ଶିକ୍ଷା
ସଦା ସାଧନେ ଧନ୍ୟ ନିର୍ଦ୍ଧାର ସଙ୍ଗେ
ଥରେ ଦେଖିବା ସ୍ୱପ୍ନ ତା ଚାରୁ ଅଙ୍ଗେ ।

ଅନ୍ୟାନ୍ୟରୁ କତିପୟ:
===================

ଛନ୍ଦ: ଦ୍ରୁତବିଳମ୍ବିତ (12/1464)
ନଗଣ ଭଗଣ ଭଗଣ ରଗଣ 111/211/211(212 ଯତି: 7,5

ଛନ୍ଦ: ତୋଟକ (12/1756)
ସଗଣ ସଗଣ ସଗଣ ସଗଣ 112/112/112/112

ଛନ୍ଦ: କରମାଳ (12/820)
ସଗଣ ଭଗଣ ତଗଣ ୟଗଣ 112/211/221/122

ଛନ୍ଦ: ବଂଶସ୍ଥ (ବଂଶସ୍ଥବଗଳଂ) (12/1382)
ଜଗଣ ତଗଣ ଜଗଣ ରଗଣ 121/221/121/212

ଛନ୍ଦ: ଭାମିନୀ (12/3511)
ଭଗଣ ଭଗଣ ଭଗଣ ଭଗଣ 211•211•211•211 ଯତି: 3,3,3,3

ଛନ୍ଦ: ସ୍ରଗ୍ୱିଣୀ (12/1171)
ରଗଣ ରଗଣ ରଗଣ ରଗଣ 212/212/212/212

ଛନ୍ଦ: ଇନ୍ଦ୍ରବଂଶା (12/1381)
ତଗଣ ତଗତ ଜଗଣ ରଗଣ 221/221/121/212

ଛନ୍ଦ: ସାରଙ୍ଗ (12/2341)
ତଗଣ ତଗଣ ତଗଣ ତଗଣ 221/221/221/221

ଛନ୍ଦ: ବିରଳୋଦ୍ଧତା (12/1881)
ମଗଣ ସଗଣ ଜଗଣ ସଡଣ 222•112/121/112 ଯତି: 3,9

ଛନ୍ଦ: ଜଳଧରମାଳା (12/241)
ମଗଣ ଭଗଣ ସଗଣ ମଗଣ 222/2•11/112/222vଯତି: 4,8

ଜ୍ଞାତବ୍ୟ: ଉପଜାତି ଛନ୍ଦ
==============
ଏକାଦଶାକ୍ଷର ବିଶିଷ୍ଟ ଇନ୍ଦ୍ରଳଜ୍ରା ଓ ଉପେନ୍ଦ୍ରବଜ୍ରା ପରି ଦ୍ୱାଦଶାକ୍ଷର ବିଶିଷ୍ଟ ବଂଶସ୍ଥ ଓ ଇନ୍ଦ୍ରବଂଶା ଛନ୍ଦର ମିଶ୍ରଣରେ ମଧ ଉପଜାତିଛନ୍ଦ ଲିଖନ ଶାସ୍ତ୍ରସମ୍ମତ ।

(୧୦) ଅତିଜଗତୀ (ଅକ୍ଷର -୧୩)

ଛନ୍ଦ: ଚନ୍ଦ୍ରିକା (13/2368)
ଗଣ: ନ ନ ତ ର +ଗା 111/111/2•21/212+2 ଯତି: 7,6

ସରିତ ଝର ଜଳେ ବାୟୁଗୁଳ୍ମ ସାଥେ,
ଅଳପ ଗତି ପଥେ ସନ୍ତରି ପ୍ରମତ୍ତେ
ରହି ରହି ଗଗନେ ଦେଖି ଚନ୍ଦ୍ରତାରା
ଜଳଧର ଭିତରେ, ଶଙ୍କଳୀ ଅଧୀରା ।

ଅନ୍ୟାନ୍ୟରୁ କତିପୟ
===================

ଛନ୍ଦ: ସୁଖକାରିକା (13/4460)
ଗଣ: ସ ଜ ଜ ମ+ଲ 112/121/121/222+1

ଛନ୍ଦ: ଚଞ୍ଚରିକାବଳୀ (13/1154)
ଗଣ: ୟ ମ ର ର+ଗା 122/222/212/212+2 ଯତି: 7,6

ଛନ୍ଦ: ରାଧା (13/547)
ଗଣ: ର ତ ମ ୟ+ଗା 212/221/22•2/122+2 ଯତି 8,5

ଛନ୍ଦ: ପ୍ରଭାବତୀ (13/2801)
ଗଣ: ମ ଭ ସ ଜ+ଗା 222/2•11/112/121+2 ଯତି: 4,9

ଛନ୍ଦ: ମତ୍ତମୟୂର (13/1633)
ଗଣ: ମ ତ ମ ମ+ଗା 222/22•1/22•2/222+2 ଯତି: 5,3,5

(୧୧) ଶକ୍ୱରୀ (ଅକ୍ଷର -୧୪)

ଛନ୍ଦ: ବଭୂଲକ୍ଷ୍ମୀ (14/2323)
ଗଣ: ର ର ତ ତ+ଗାଗା 212/212/221/221+22

ଆକୁଳେ ମଞ୍ଜରୀ ଭାଷେ ଶୁଣ ପ୍ରେମ ଭାଷା
କ୍ଷୁଦ୍ର ଏ ଜୀବନେ ଏତେ ବଢାନା ହତାଶା ।
ମୋ ସଖା ଚଞ୍ଚରୀ ଅନ୍ତସ୍ଥଳେ ସଦ୍ୟ ଜାଗେ
ପ୍ରେମନିର୍ଘୂରିଣୀ, ସାଥୀ ନ ଯା ବୀତରାଗେ ।

ଛନ୍ଦ: ବସନ୍ତତିଳକା ( 14/2933)
ଗଣ: ତ ଭ ଜ ଜ+ଗାଗା 221/211/121/121+22

ତୁଚ୍ଛାତିତୁଚ୍ଛ ଶିଖିକାଷ୍ଠ ବି ଜାଳି ପାରେ
ବିସ୍ତୀର୍ଣ୍ଣ ଘଞ୍ଚ ବନ ଏକ ମୁହୂର୍ତ୍ତ ମଧ୍ୟେ
କିନ୍ତୁ ସ୍ୱଦେହକୁ ନିଜେ ପ୍ରଥମେ ଜଳାଏ ।
କ୍ରୋଧାଗ୍ନି ଅନ୍ୟକୁ ତଥା ସ୍ୱତନୁ ପ୍ରଦାହେ ।

ଅନ୍ୟାନ୍ୟରୁ କତିପୟ
===================
ଛନ୍ଦ: ନଦୀ (14/2880)
ଗଣ: ନ ନ ତ ଜ+ଗାଗା 111/111/2•21/121+22 ଯତି: 7,7

ଛନ୍ଦ: ବଂଶମୂଳ (14/2804)
ଗଣ: ସ ଭ ସ ଜ+ଗାଗା 112/211/112/121+22

ଛନ୍ଦ: ପ୍ରତିଭା (ପ୍ରତିଭାଦର୍ଶନମ୍) (14/3892)
ଗଣ: ସ ଭ ତ ନ+ଗାଗା 112/211/221/111+22

ଛନ୍ଦ: କଳହଂସୀ (14/3277)
ଗଣ: ତ ୟ ସ ଭ+ଗାଗା 221/122•112/211+22 ଯତି: 6,8

ଛନ୍ଦ: ଅସଂବାଧା (14/2017)
ଗଭ: ମ ତ ନ ସ+ଗାଗା 222/22•1/111/112+22 ଯତି: 5,9

(୧୨) ଅତିଶକ୍ବରୀ (ଅକ୍ଷର -୧୫)

ଛନ୍ଦ: ମଣିଗୁଣନିକର (15/16384)
ଗଣ: ନନନନସ 111/111/11•1/111/112 ଯତି: 8,7

ହସ ହସ ଅହରହ ସହଚର ଗହଣେ
ତରକି ତରକି ଥକି ଯିବ ଟିକି ନୟନେ ।
ତର ତର ସରିତର ଝର ଝର ଝରଣା
ରଣ ଝଣ ବିଲ ବଣ, ପୟରର ଗହଣା । ୧

ଛନ୍ଦ: ମାଳିନୀ (15/4672)
ଗଣ: ନନମୟୟ 111/111/22•2/122/122 ଯତି: 8,7

ଭରିତଜଳଦଧୀରୋ- ଦ୍ଧୀତଗମ୍ଭୀରଧର୍ମା
ପବନଦମନକାରୀ ବାଣତୂଣୀରହର୍ତ୍ତା
ଅଭୟବଚନଦାୟୀ ସାନୁଜ ପ୍ରାଣପିଣ୍ଡେ
ଅସୁରକୁଳବିନାଶୀ ରାମ ସୌଖ୍ୟପ୍ରଦାତା 2

ଅନ୍ୟାନ୍ୟରୁ କତିପୟ
====================
ଛନ୍ଦ: ମଦନମାଳିକା (15/9688)
ଗଣ: ନ ର ନ ର ନ 111/212/111/212/212

ଛନ୍ଦ: ମୋହିନୀ (15/13106)
ଗଣ: ସ ଭ ତ ୟ ସ 112/211/221/122/112 ଯତି: 7,8

ଛନ୍ଦ: ସିଂହପୁଚ୍ଛ (15/4682)
ଗଣ: ଯ ଯ ଯ ଯ ଯ 122/122/122/122/122
ଛନ୍ଦ: ଲାସ୍ୟକାରୀ (15/9363)
ଗଣ: ର ର ର ର ର 212/212/212/212/212

ଛନ୍ଦ: ଚନ୍ଦ୍ରଲେଖା (15/4625)
ଗଣ: ମ ର ମ ଯ ଯ 222/212/2•22/122/122 ଯତି: 7,8

ଛନ୍ଦ: ବାଣୀଭୂଷା (15/3841)
ଗଣ: ମମତନଯ 222/222/22•1/111/122 ଯତି: 8,7

ଛନ୍ଦ: ଚିତ୍ରା (15/4609)
ଗଣ: ମମମଯଯ 222/222/22•2/122/122 ଯତି: 8,7

ଛନ୍ଦ: ସାରଙ୍ଗୀ (15/1)
ଗଣ: ମମମମମ 222/222/22•2/222/222 ଯତି: 8,7

(୧୩) ଅଷ୍ଟି (ଅକ୍ଷର -୧୬)

ଛନ୍ଦ: ପଞ୍ଚଚାମର (16/21846)
ଗଣ: ଜରଜରଜ+ଗା 121/212/121/212/121+2

ପ୍ରଣାମ ତୁମ୍ଭ ପାଦରେ ଅସୀମ ଶକ୍ତି ଆଗରେ,
ସମର୍ପଣେ ସମାଦରେ ସୁଚିନ୍ତନେ ସରାଗରେ ।
ଦିବା ତଥା ନିଶାର୍ଦ୍ଧରେ ସୁଖେ ତଥା ବିଷାଦରେ,
ସୁସଙ୍ଗତେ ବିବାଦରେ, ଧନାଗମେ ମହାର୍ଘରେ ।

ଅନ୍ୟାନ୍ୟରୁ କତିପୟ
====================
ଛନ୍ଦ: ଅଚଳଧୃତି (16/65536)
ନନନନନ+ଗା 111/111/111/111/111+1

ଛନ୍ଦ: ଗରୁଡରୁତ (16/19376)
ନଜଭଜତ-ଗା 111/121/211/121/221+2

ଛନ୍ଦ: କାନ୍ତ (16/13264)
ନଯନଯଯ+ଗା 111/122/111/122/122+2

ଛନ୍ଦ: ମନ୍ଦାକିନୀ (16/17477)
ତମଯରତ+ଗା 221/2•22/12•2/212•221+2 ଯତି: 4,4,4,4

ଛନ୍ଦ: ବ୍ରହ୍ମରୂପକ (16/1)
ମମମମମ+ଗା 222/222/222/222/222+2

(୧୪) ଅତ୍ୟଷ୍ଟି (ଅକ୍ଷର -୧୭)

ଛନ୍ଦ: ବୀରବିଶ୍ରାମ (17/11968)
ନନରନର+ଗାଗା 111/111/212/111/212+22

ଗଗନପଥପରେ କିଏ କୁସୁମ ମାଳିକା ଖଞ୍ଜେ
ନିତି ନିତି ଦିନ ଶେଷରେ ଗହନ କାଳିମାସଞ୍ଜେ ।
କିଛି ଦିଶି କିଛି ତାମସେ ହଜି ଗଲା ଅବା ଲାଗେ;
ପଢିବି ଶିଖିବି ବୋଲି ମୋ ଦମିତବାସନା ଜାଗେ ॥

ଛନ୍ଦ: ହରିଣୀ (17/46112)
ନସମରସ+ଲଗା 111/112•222/2•12/112+12 ଯତି: 6,4,10

ଅରୁଣ ଗଗନେ ରକ୍ତାଭାରେ ଅଲକ୍ଷିତ ସମ୍ପଦ
କରୁଣ ନୟନେ ଭୂଭାଗେ ସେ ବିଷାଦିତ ଗଦ୍ଗଦ
ମଦିର ଚଳୁକେ ଲଜ୍ଜାଚ୍ଛାୟା, ସୁଧାଳୟ ରୌଦ୍ରତେ
ଦର କଷି ମୁଠେ ଦାନା ଦାତା ଅଲକ୍ଷ ଦୃଶାଗ୍ରତେ ।

ଛନ୍ଦ: ଶିଖରିଣୀ (17/59330)
ୟମନସଭ+ଲଗା 122/222•111/112/211+12 ଯତି: 6, 11

ଦିନେ ବୃକ୍ଷାବାସେ ପ୍ରଣୟ ଅଭିଳାଷେ ଦ୍ୟୁପଥିନୀ
କହେ ପାଶେ ଆସି ପ୍ରିୟ ଦୟିତ ବାରେ କହ କଥା ।
ମୁ ଯେ ତୁମ୍ଭପ୍ରେମେନବମୁକୁଳିତାଙ୍ଗୀ କମଳିନୀ,
ନଭେ ରୋଧୋବକ୍ରା-ପତିର ତନୟେ ମୋ ବିବଶତା ॥

ଛନ୍ଦ: ବଂଶପତ୍ରପତିତମ୍ (17/64983)
ଭରନଭନ+ଲଗା 211/212/111/2•11/111+12 ଯତି: 10,7

ମର୍ମର ବଂଶପତ୍ର ଖସିଲା ମୁର ମରୁ ମରୁତେ
ନିର୍ଜଳ ରକ୍ତପୁଷ୍ପ ଝରିଲା ମରଣରଣ ଗତେ ।

ପର୍ବତ ସର୍ବତୋମୁଖ ମୁଖେ ତରୁତଳ ତରୁଣୀ
ଭାଳୁଛି ଭାଗ୍ୟଦୋଷ ଦିଶିଲା  ରହିଲି ବିରହିଣୀ ॥

ଛନ୍ଦ: ମନ୍ଦାକ୍ରାନ୍ତା (17/18929)
ମଭନତତ+ଗାଗା 222/2•11/111/2•21/221+22 ଯତି: 4,6,7

ପ୍ରାଚ୍ୟାକାଶେ ଉଷବିସରଣେ ମଲ୍ଲିକା ଗ୍ରାମ୍ୟବାଳା
ଜାଳଦ୍ୱାରେ  ଜନପଥଜନେ ଦୃଷ୍ଟି ପାତେ ସତର୍କେ ।
ଧୀରେ ଧୀରେ  ନୟନପରିତଃ ଦିବ୍ୟ ଶ୍ୱେତ ପ୍ରବନ୍ଧେ
ବର୍ଣ୍ଣୋଦ୍ଦୀପ୍ତ ପ୍ରଖରଗମନା ସ୍ୟନ୍ଦନଶ୍ରୀ ବିଭାସେ ॥

ଅନ୍ୟାନ୍ୟରୁ କତିପୟ
====================
ଛନ୍ଦ: ପୃଥ୍ୱୀ (17/38750)
ଜସଜସୟ+ଲଗା 121/112/12•1/112/122+12 ଯତି: 8,9

ବାଳବିକ୍ରୀଡିତମ୍ (17/38751)
ଭସଜସୟ+ଲଗା 211/112/121/121/122+12

ଛନ୍ଦ; ପ୍ରତିହାର (17/74899)
ରରରରର+ଗାଲ 212/212/212/212/212+21

ଛନ୍ଦ: କାମରୂପ (17/20369)
ମରଭନତ+ଗାଗା 222/212/211/111/221+22

(୧୫) ଧୃତି (ଅକ୍ଷର -୧୮)

ଛନ୍ଦ: ଚଞ୍ଚରୀ (ଚର୍ଚ୍ଚରୀ) (18/93019)
ରସଜଜଭର 212/11•2/121/1•21/211/212 ଯତି: 5,5,8

ଦିକ୍ପଥେ ରବି ହୃଦ୍ଗତେ କବି ଅଗ୍ରତେ ହତ ସାଧିତଂ
ହେ ନିଷଦ୍ବର ହୃଦ୍ୟତା କର ଲେଖ ମୋ ତବ ଆଶ୍ରିତଂ
ଧ୍ୱସ୍ତ ଜୀବନ ଅସ୍ତ ତାପନ ଗସ୍ତ ଲଗ୍ନ ସମାଗତଂ
ନ୍ୟସ୍ତ ସଜ୍ଜନ ହାର୍ଦ୍ଦ ବାଞ୍ଛନ କାବ୍ୟମାଦକ ଛନ୍ଦିତମ୍ ।

ଅନ୍ୟାନ୍ୟରୁ କତିପୟ
====================

ଛନ୍ଦ: ପ୍ରିୟା (18/74944)
ନନରରରର 111/111/212/212/212/212

ଏହି ଛନ୍ଦରେ ଯତି 9,9ରେ ଛନ୍ଦ ନାରାଚ, ଯତି 10,8ରେ
ଲାଳସା ଓ 6,12 ରେ ଛନ୍ଦ ନାମ ନିଶା ।

ଛନ୍ଦ: ଅନୁରାଗ (18/184176)
ନଜଜନତଜ 111/121/121/111/221/121 ଯତି 8,10

ଛନ୍ଦ0: ପରିପୋଷକ (18/112348)
ସସସସସସ 112/112/112/112/112/112

ଛନ୍ଦ: କ୍ରୀଡାଚନ୍ଦ୍ର (କ୍ରୀଡାଚକ୍ର, ଚନ୍ଦ୍ରିକା) (18/37450)
ୟୟୟୟୟୟ 122/122/122/122/122/122

ଛନ୍ଦ: ସିନ୍ଧୁସୌବୀର (18/74899)
ରରରରରର 212/212/212•212/212/212 ଯତି: 9,9

ଛନ୍ଦ: ହରିଣପ୍ଲୁତ (18/93017)
ମସଜଜଭର 222/112/12•1/121/2•11/212 ଯତି: 8,5,5

(୧୬) ଅତିଧୃତି (ଅକ୍ଷର -୧୯)

ଛନ୍ଦ: ଶାର୍ଦ୍ଦୂଳ ବିକ୍ରୀଡିତମ୍ (19/149337)
ମସଦସତତ+ଗା 222/112/121/112•221/221+2 ଯତି 12,7

ସୂର୍ଯ୍ୟସ୍ନାତ ଧରାଧରେ ବସି ଜଣେ ସଂଗୀତକର୍ତ୍ତା କିଏ
ସଂସାର ପ୍ରତି ନିଃସ୍ୱ ଜୀବନ ତଳେ ଆଶାର ଆସ୍ଥା ଦିଏ ।
ବୈରାଗ୍ୟାଶ୍ରିତ କେଉଁ ପାବନବନ ପ୍ରାଗ୍ୱଂଶ ବଂଶୀ ସମ,
ଯତ୍ନେ ସଂଯମ ପୂର୍ଣ୍ଣ ମୂର୍ଚ୍ଛନ କରେ ଶାର୍ଦ୍ଦୂଳ ବିକ୍ରୀଡିତମ୍ ॥

ଅନ୍ୟାନ୍ୟରୁ କତିପୟ
===================

ଛନ୍ଦ: ମଣିମଞ୍ଜରୀ (19/185330)
ୟଭନୟଜଜ+ଗା 122/211/111/121•121/121+2 ଯତି: 12,7

ଛନ୍ଦ: ରସାଳ (19/449919)
ଭନଜଭଜଜ+ଲ 211/111/121•211/121/121+1 ଯତି: 9,10

ଛନ୍ଦ: ଉର୍ଜ୍ଜିତ (19/186587)
ରସସତଜଜ+ଗା 212/112/112/2•21/121/121+2 ଯତି: 10,9

ଛନ୍ଦ: କିରଣକୀର୍ତ୍ତି (19/130349)
ତଜତଭନସ+ଗା 221/121/2•21/211/111/112+2 ଯତି 7,12

(୧୭) କୃତି (ଅକ୍ଷର -୨୦)

ଛନ୍ଦ: ସୁବଦନା (20/466833)
ମରଭନୟଭ+ଲଗା 222/212/2•11/111/12•2/211+12 ଯତି: 7,7,6

ପୁଷ୍ପୋଦ୍ୟାନେ ପ୍ରଦୋଷେ ଉଷକୁସୁମ ଖସେ ଅତ୍ୟଳ୍ପ ବୟସେ
କ୍ଷିପ୍ରା ଫୁଲ୍ଲା ସ୍ରବନ୍ତୀ ବରିଷ ଅତିଗତେ ଗ୍ରୀଷ୍ମେ କି ବିରସା
ଆକାଶେ ଚନ୍ଦ୍ର କାନ୍ଦେ ଘନ ଘନ ଭିତରେ କେବେ ବି ସହସା
ସନ୍ଧ୍ୟା ହେଲା ସମସ୍ତେ ଖୁସି ଗପ କରିବା ଆଗେ କି ଭରସା ।

ଅନ୍ୟାନ୍ୟରୁ କତିପୟ
====================

ଛନ୍ଦ: ଭୃଙ୍ଗ (20/767432)
ନନନନନନ+ଗାଲ 111×6+21 ଯତି: 6,6,8

ଛନ୍ଦ: ଗୀତିକା (20/372076)
ସଜଜଭରସ+ଲଗା 112/121/121/211•212/112+12 ଯତି: 12,8

ଛନ୍ଦ: ଉତ୍ପଳମାଳିକା ( 20/355799)
ଭରନଭଭର+ଲଗା 211/212/111/211/211/212+12 ଯତି: 11,9

ଛନ୍ଦ: ସୁବଂଶା (20/151441)
ମରଭନତତ+ଗାଗା 222/212/2•11/111/2•21/221+22 ଯତି: 7,6,7

ଛନ୍ଦ: ଭୂରିଶୋଭା (20/151489)
ମମନନତତ+ଗାଗା 222/222•111/111/2•21/221+22 ଯତି: 6,7,7

(୧୮) ପ୍ରକୃତି (ଅକ୍ଷର -୨୧)

ଛନ୍ଦ: ସ୍ରଗ୍ଧରା (21/302993)
ମରଭନୟୟୟ 222/212/2•11/111/12•2/122/122 ଯତି: 7,7,7

ସେ ବର୍ଷାଧୌତ ରାତ୍ରୀ ପ୍ରଥମ ଦରଶନେ ଜାଗିଲା ପ୍ରେମ ଆଶା
ଉର୍ବୀଗନ୍ଧେ ଅଦମ୍ୟା ମଣ୍ଡନ କଳପନା ସର୍ଜିଲା ଗୁପ୍ତ ଶଂସା ।
ଜାଣେନା କେଉଁ ଭାବେ କୁସୁମ ଉପବନେ ହେଲି ସନ୍ଧ୍ୟାର କନ୍ୟା,
ବଲ୍ଲୀରେ ଚଞ୍ଚରୀ ମୋ ତୁମି ନବକଳିକା ସର୍ଜିଲା ପ୍ରେମବନ୍ୟା ।

ଛନ୍ଦ: ମନବିଶ୍ରାମ (21/519607)
ଭ×5 ନୟ 211×5/111/122 ଯତି: 10,11

ଘଞ୍ଚ ନିଷଦ୍ୱର ହିଂସ୍ର ବନେଚର ଦୁଷ୍ଟ ରଜନିଚର ବୃକ୍ଷେ
ଅନ୍ତିମ ଶର୍ବର ଉଦ୍ୟତ ବାସର ବିକ୍ରମ ଖରତର ଲକ୍ଷ୍ୟେ ।
ବାନ୍ଧିବ ରୋହକ ଯଞ୍ଚର ସନ୍ତକ ଦେଶିତ ଚତୁରକ-ଆସ୍ୟେ
ସାର୍ଥ ସମୁତ୍ତର ଶୂନ୍ୟ ଥିଲେ ଶିର ଖଣ୍ଡିବ ଭୟକର ବାସ୍ୟେ ॥

ଛନ୍ଦ: ତଡିଦମ୍ବର (21/1797559)
ଭଗଣ×7 211×7 (ସାତ ଥର 211)

ଛନ୍ଦ: ଦୁରାବଲୋକ (21/597905)
ମ×4 ତରମ 222×4/221/212/222

ଛନ୍ଦ: ମନବିଶ୍ରାମ (21/519607)
ଭ×5 ନୟ 211×5/111/122 ଯତି: 10,11

(୧୯) ଆକୃତି (ଅକ୍ଷର -୨୨)

ଛନ୍ଦ: ମଦିରା (ମାନିନୀ) (22/1797559)
ଭଗଣ×7+ଗା 211×7+2 ଯତି: 10,12

ହେ ପରମେଶ୍ୱର ବିଶ୍ୱଚରାଚର ତତ୍ପର ତୁମ୍ଭର ସର୍ଜନରେ
ପତ୍ତ୍ରି-ଜଳେଚର-ପନ୍ନଗ-କୋଟିର-ଲୂନକ-ବାନର-ଦୈତ୍ୟ-ନରେ
ଉନକ-ଜନ୍ମଜ ଉନ୍ନତ ଉର୍ଦ୍ଧ୍ୱଜ ଡିମ୍ବଜରାୟୁଜ-କାପଟିକେ
ଗୁଳ୍ମ-ବନସ୍ପତି-ଶଷ୍ପ-ଲତା-ଜଡ-ଜଙ୍ଗମ ତୁମ୍ଭର ସାକ୍ଷ୍ୟ ରଖେ ॥

ଅନ୍ୟାନ୍ୟରୁ କତିପୟ

===================

ଛନ୍ଦ: ଅଚଳଧୃତି (20/2097152)

ନଗଣ×7+ଗା 111 × 7+2

ଛନ୍ଦ: ଅୟମାନ (22/898780)

ସଗଣ×7+ଗା 112×7+2

ଛନ୍ଦ: ମହାସ୍ରଗ୍ଧରା (22/605996)

ସତତନସରର+ଗା 112/221/221/111/112/212/212+2 ଯତି: 8,7,7

ଛନ୍ଦ: ମତ୍ତେଭ (22/1915765)

ତଭଜଜସରନ+ଗା 221/211/121/121/112/212/111+2 ଯତି: 7,7,8

ଛନ୍ଦ: ମନ୍ଦାରମାଳା (22/1198373)

ତଗଣ×7+ଗା 221×7+2

ଛନ୍ଦ: କଙ୍କଣକାଣବାଣୀ (22/599185)

ମଗଣ ରଗଣ×6+ଗା 222/212×6+2

(୨୦) ବିକୃତି (ଅକ୍ଷର -୨୩)

ଛନ୍ଦ: ଶୈଳସୁତା (23/3595120)

ନ ଜ×6+ଲଗା 111/121×6-12

ତରଳବିଚାରିଣି ଶୂନ୍ୟବିହାରିଣି ଉଦ୍ବସନାଶିନି ହର୍ଷଭରେ
କୁସୁମିତ ଗୋଚର ତୁଙ୍ଗ ଧରାଧର ବିଗ୍ରହକାତର ବୃକ୍ଷବରେ ।
ବନତଳନିର୍ଝର କୈରବପୁଷ୍କର ଦର୍ଦ୍ଦରକନ୍ଦର କାନ୍ଦି ମରେ
ଅଲିଅଳି କନ୍ଦିନି କର୍ବୁରଦେହିନି କୈଶିକକାମିନି ଆସ ଥରେ ।

ଅନ୍ୟାନ୍ୟରୁ କତିପୟ

===================

ଛନ୍ଦ: ବିଳମ୍ବିଲମ୍ବିତ (ବିଳ)(23/3528542)

(ଜସ)×3 ଜ+ଲଗା (121/112)×3/121+12

ଛନ୍ଦ: ସୁମୁଖୀ (ମନବତୀ)(23/3595118)

ଜଗଣ×7+ଲଗା 121×7-12 ଯତି: 11,12

ଛନ୍ଦ: ବାଗୀଶ୍ୱରୀ (23/2396746),
ୟଗଣ×7+ଲଗା 123×7+12

ଛନ୍ଦ: ମତ୍ତଗୟନ୍ଦ ( 23/1797559)
ଭଗଣ×7+ଲଗା 211×7+ଲଗା

ଛନ୍ଦ: ସର୍ବଗାମୀ (23/1198373)
ତଗଣ×7+ଗାଗା 221×7+22 ୟତି: 11,12

ଛନ୍ଦ:ପାରାବାରାନ୍ତସ୍ଥ (23/3270145)
ମମମସଭସତ+ଲଗା 222/222/222/112/211/112/221+12

(୨୧) ସଂକୃତି (ଅକ୍ଷର -୨୪)

ଛନ୍ଦ: ମହାଭୁଜଙ୍ଗପ୍ରୟାତ (24/2396746)
ମଗଣ×8 ବା ମମମମ ମମମମ 122×8

ପ୍ରିୟାଶ୍ଲେଷ ଆଶେ ପ୍ରଧାବି ପ୍ରବାସେ ଥକେ ନା ପ୍ରୟାସେ ମୁଁ ସେହି ସ୍ରବନ୍ତୀ ।
ସରାଗେ ପ୍ରମୁଗ୍ଧା ବିରାଗେ ଅଲବ୍ଧା ଅଭୀଷ୍ଟେ ବିବଦ୍ଧା ଧ୍ୱଜା ବୈଜୟନ୍ତୀ ।
ଅଭୀକେ ସୁଲବ୍ଧା ବିବିକ୍ତେ ନିଶବ୍ଦା ନିଶୀଥେ ପ୍ରବୁଦ୍ଧା ମୁଁ କନ୍ୟାଚକୋରୀ ।
କଳେ ସେ ଇସାରା ତୁମେ ଜାଣି ଆଶ୍ରା ଚଳନ୍ତା ବିଚାରା ବିଦଗ୍ଧା କିଶୋରୀ ॥

ଅନ୍ୟାନ୍ୟରୁ କତିପୟ
====================
ଛନ୍ଦ: ଅତୁଳପୁଲକ (24/8388608)
ନଗଣ×7 ସଗଣ 111×7/112

ଛନ୍ଦ: ଶମ୍ବର (20/5993912)
(ନଭଭର)×2 (111/211/211/212)×2

ଛନ୍ଦ: ଦୁର୍ମିଳ (ଦୁର୍ମିଳା) (20/7190236)
ସଗଣ×8 112×8 ୟତି: 8,8,8 ବା 12,12

ଛନ୍ଦ: ବାମ (ମଞ୍ଜରୀ, ମାଧଭ) (20/3595118)
ଜଗଣ×7 ୟଗଣ 121×7/122

ଛନ୍ଦ: ଆର୍ଦ୍ଦିତ (ନର୍ଦ୍ଦିତ) (20/4156855)
ଭଗଣ×6 ନଗଣ ଯଗଣ 211×6/111/122

ଛନ୍ଦ: ସ୍ୱୈରିଣୀକ୍ରୀଡିତମ୍ (ଗଙ୍ଗୋଦକ) (20/4793491)
ରଗଣ×8 212×8

ଛନ୍ଦ: ଆଭାର (20/9586981)
ତଗଣ×8 221×8

ଛନ୍ଦ: ଅଧୀରକରୀର (24/3653113)
ମନନଭ ସନଜଯ 222/111/111/211/112/111/121/122

(୨୨) ଅତିକୃତି (ଅକ୍ଷର -୨୫)

ଜନ୍ଦ: କ୍ରୌଞ୍ଚପଦା (କ୍ରୌଞ୍ଚ) (25/16776391)
ଭମସଭ(ନ×4)+ଗା 211/22•2/112/2••11/111/111•111/111+2
ଯତି: 5,5,8,7

ତାଲ ସମସ୍ତେ ପାଶ ବନସ୍ତେ
ଫୁଟିବ କୁଟଜ ଫୁଲ ରଜନି ଉପଗତେ ।
ଅମ୍ବର ସାରା ଉଜ୍ଜ୍ୱଳ ତାରା
ଅଗଣିତ ଦିଶୁ ଥିବ ସୁରପୁର ପସରା ।
ପୁଷ୍କର କୋଳେ ବାର୍ଦ୍ଦଳ ଦୋଳେ
ଅପଲକ ଶଶଧର ଥିବ ସରକମଳେ ।
କାକରପାତେ ଶୀକରବାତେ
ହସିବ ନବକୁସୁମ ବନଝର ମରୁତେ ॥

ଅନ୍ୟାନ୍ୟରୁ କତିପୟ
===================
ଛନ୍ଦ: ଅଳକା (ଅଳିକା) (25/16777216)
ନଗଣ×8+ଗା 111×8+2

ଛନ୍ଦ: ଅରବିନ୍ଦ (25/23967452)
ସଗଣ×8+ଲ 112×8+1 ଯତି: 12,13

ଛନ୍ଦ: ଲବଙ୍ଗଲତା (25/28760942)
ଜଗଣ× 8+ଲ 121×8+1

ଛନ୍ଦ: ମଲ୍ଲମଲ୍ଲୀପ୍ରକାଶ (25/19173962)
ୟଗଣ×8+ଲ 122×8+1

ଛନ୍ଦ: ଶିବିକା (25/14380471)
ଭଗଣ×8+ଗା 211×8+2

ଛନ୍ଦ: ଭାବିନୀବିଳସିତଂ (25/15445691)
(ରନ)×4+ଗା (212/111)×4 + 2

ଛନ୍ଦ: ବିରହବିରହସ୍ୟ (25/8362489)
ମନନତ ୟନନସ+ଗା 222/111/111/221/122/111/111/112+2

(୨୩) ଉତ୍କୃତି (ଅକ୍ଷର -୨୬)

ଛନ୍ଦ: ମକରନ୍ଦ (26/16774096)
ନୟନୟ ନନନନ+ଗାଗା 111/122•111/122••111/111/11•1/111+22 ଯତି: 6,6,8,6

ଶତଶତ ରାଧା ଶତ ବନମାଳୀ
ମଥିତ ନଗରପଥ ଜନପଦ ବାଳୀ ।
କିଛି କିଛି ଆଶା ସହିତ ବିଷାଦେ
ମିଳନ ପରମସୁଖ ପରର ବିବାଦେ ।
ଅଭିନବଭାଷା ନବ ରସପତ୍ରେ
ରହିଥିବ ସୁରଚିତ ଟିକି ବଚଯନ୍ତ୍ରେ ।
ପଢି ପଢି ଲେଖାଜଳମୟ ନେତ୍ରେ
ମନ ବୁଝିବ ତ ଯିବ ବୃତକରପତ୍ରେ ॥

L. Kabi 20240115/11:15

ଅନ୍ୟାନ୍ୟରୁ କତିପୟ
===================

ଛନ୍ଦ: ଚାରୁଗତି (26/11202816)
ନନସମ ନଜରଜ+ଗାଗା
111/111/112/222/111/121/212/121+22

ଛନ୍ଦ: କୁମ୍ଭକ (26/38347968)
ନଗଣ×2 ରଗଣ×6+ଗାଲ 111×2/212×6+21

ଛନ୍ଦ: ବିରାମବାଟିକା (26/32175792)
ନଜରସନଜରନ+ଲଗା 111/121/212/112/111/121/212/111+12

ଛନ୍ଦ: ମକରନ୍ଦ (26/16774096)
(ନୟ)×2 ନ×4+ଗାଗା (111/122)×2/111×4+22 ଯତି: 6,6,8,6

ଛନ୍ଦ: ସୁଖ (ବଶଂବଦ) (26/57521884)
ସଗଣ×8+ଲଲ 112×8+11 ଯତି: 12,14

ଛନ୍ଦ: ସୁଖା (26/23967452)
ସଗଣ×8+ଲଗା 112×8+12 ଯତି: 12,14

ଛନ୍ଦ: ପ୍ରିୟଜୀବିତ (26/17380471)
ଭଗଣ×8+ଗାଗା 211×8+22

ଛନ୍ଦ: ବିକୁଣ୍ଠଖଣ୍ଡ (26/11184811)
(ରଜ)×4+ଗାଗା (212/121)×4+22 ଯତି: 7,7,12

## 2.2 ଅର୍ଦ୍ଧସମ ବାର୍ଣ୍ଣିକ ଛନ୍ଦ ବା ବୃତ୍ତ ପ୍ରକରଣ

====================
ଛନ୍ଦୋନାମ: ସୁନ୍ଦରୀ (ବିୟୋଗିନୀ, ସୁରମାଳିକା)
ପାଦ 1,3 ସଗଣ ସଗଣ ଜଗଣ+ଗା 112/112/121+2
ପାଦ 2,4 ସଗଣ/ଭଗଣ/ରଗଣ+ଲଗା 112/211/212+12

(ଉଭୟତଃ ସମା ଅର୍ଥାତ୍ ପାଦ ଗୁଡିକୁ ଓଲଟେଇ ଲେଖିଲେ ଆର୍ଥାତ୍ 1 ଓ 3କୁ 2 ଓ 4ରେ ଲେଖି ପାଦ 2 ଓ 4କୁ ପଖଦ 1 ଓ 3 ରେ ଲେଖିଲେ ବି ଛନ୍ଦ ନାମ ସେହି ସୁନ୍ଦରୀ ହିଁ ରହିବ ।
========X
ଛନ୍ଦୋନାମ: ସୁନ୍ଦରୀ

ପାଦ 1,3 ସଗଣ/ଭଗଣ/ରଗଣ+ଲଗା 112/211/212+12

ପାଦ 2,4 ସଗଣ ସଗଣ ଜଗଣ+ଗା 112/112/121+2

(ଉଭୟତଃ ସମା)

====================

====================

ପ୍ରମାଳିକା (ସୌରଭସଞ୍ଚିତ)

ପାଦ 1,3 ସଗଣ ଭଗଣ ରଗଣ ୟଗଣ 112/211/212/122

ପାଦ 2,4 ସଗଣ ସଗଣ ଜଗଣ+ଗାଗା 112/112/121 + 22

(ବିଲୋମେ ଅର୍ଥାତ୍ ପାଦଗୁଡିକୁ ଓଲଟେଇଲେ ବସନ୍ତମାଳିକା)

========X

11, 12 -vv

ଅର୍ଦ୍ଧସମଛନ୍ଦ: ବସନ୍ତମାଳିକା (ପରିଶ୍ରୁତା)

ପାଦ 1,3 ସଗଣ ସଗଣ ଜଗଣ+ଗାଗା 112/112/121 + 22

ପାଦ 2,4 ସଗଣ ଭଗଣ ରଗଣ ୟଗଣ 112/211/212/122

(ବିଲୋମେ ପ୍ରମାଳିକା)

====================

====================

ଅରୁନ୍ତୁଦ

ପାଦ 1,3 ସଗଣ ସଗଣ ଜଗଣ+ଗା 112/112/121+2

ପାଦ 2,4 ନଗଣ ଜଗଣ ଜଗଣ ରଗଣ 111/121/121/212

(ବିଲୋମେ ଅନୂପକ)

========X

ଅନୂପକ

ପାଦ 1,3 ନଗଣ ଜଗଣ ଜଗଣ ରଗଣ 111/121/121/212

ପାଦ 2,4 ସଗଣ ସଗଣ ଜଗଣ+ଗା 112/112/121+2

(ବିଲୋମେ ଅରୁନ୍ତୁଦ)

====================

====================

ପୁଷ୍ପିତାଗ୍ରା

ପାଦ 1,3

ନଗଣ ନଗଣ ରଗଣ ୟଗଣ 111/111/212/122

ପାଦ 2,4

ନଗଣ ଜଗଣ ଜଗଣ ରଗଣ+ଗା 111/121/121/212+2

(ବିଲୋମେ ଅଞ୍ଚିତାଗ୍ରା)

========X

ଅଞ୍ଚିତାଗ୍ରା

ପାଦ 1,3

ନଗଣ ଜଗଣ ଜଗଣ ରଗଣ+ଗା 111/121/121/212+

ପାଦ 2,4
ନଗଣ ନଗଣ ରଗଣ ଯଗଣ 111/111/212/122
(ବିଲୋମେ ପୁଷ୍ପିତାଗ୍ରା)
====================
====================
ଭଦ୍ରବିରାଟ୍
ପାଦ 1,3 ତଗଣ ଜଗଣ ରଗଣ+ଗା 221/121/212+2
ପାଦ 2,4 ମଗଣ ସଗଣ ଜଗଣ+ଗାଗା 222/112/121+22
(ବିଲୋମେ ଯୁଦ୍ଧବିରାଟ୍)
========X
ଯୁଦ୍ଧବିରାଟ୍
ପାଦ 1,3 ମଗଣ ସଗଣ ଜଗଣ+ଗାଗା 222/112/121+22
ପାଦ 2,4 ତଗଣ ଜଗଣ ରଗଣ+ଗା 221/121/212+2
(ବିଲୋମେ ଭଦ୍ରବିରାଟ୍)
====================
====================
ଶୁକାବଳୀ
ପାଦ 1,3
ତଗଣ ଜଗଣ ରଗଣ+ଗା 221/121/212+2
ପାଦ 2,4
ମଗଣ ନଗଣ ଜଗଣ ରଗଣ+ଗୁ 222/111/121/212+2
(ବିଲୋମେ କିଂଶୁକାବଳୀ)
========X
କିଂଶୁକାବଳୀ
ପାଦ 1,3
ମଗଣ ନଗଣ ଜଗଣ ରଗଣ+ଗୁ 222/111/121/212+2
ପାଦ 2,4
ତଗଣ ଜଗଣ ରଗଣ+ଗା 221/121/212+2
(ବିଲୋମେ ଶୁକାବଳୀ)
====================
====================
ସୁରାଢ୍ୟା
ପାଦ 1,3 ନଗଣ ନଗଣ ରଗଣ ଯଗଣ 111/111/212/122
ପାଦ 2,4 ମଗଣ ସଗଣ ଜଗଣ+ଗାଗା 222/122/121+22
(ବିଲୋମେ ଅସୁରାଢ୍ୟା)
========X
ଅସୁରାଢ୍ୟା
ପାଦ 1,3 ମଗଣ ସଗଣ ଜଗଣ+ଗାଗା 222/122/121+22

ଛନ୍ଦଃସଂରଚନା

ପାଦ 2,4 ନଗଣ ନଗଣ ରଗଣ ୟଗଣ 111/111/212/12
(ବିଲୋମେ ସୁରାଢ୍ୟା)
====================
====================
କେତୁମତୀ
ପାଦ 1,3 ସଗଣ ଜଗଣ ସଗଣ+ଗା 112/121/112+2
ପାଦ 2,4 ଭଗଣ ରଗଣ ନଗଣ+ଗାଗା 211/212/111+22
ଳ
(ବିଲୋମେ କେତୁ)
========X
କେତୁ
ପାଦ 1,3 ଭଗଣ ରଗଣ ନଗଣ+ଗାଗା 211/212/111+22
ପାଦ 2,4 ସଗଣ ଜଗଣ ସଗଣ+ଗା 112/121/112+2
(ବିଲୋମେ କେତୁମତୀ)
====================

====================
ସଂପାତଶୀଳା
ପାଦ 1,3 ତଗଣ ମଗଣ ରଗଣ+ଗା 221/222/212+ଗୁ
ପାଦ 2,4 ସଗଣ ନଗଣ ମଗଣ ୟଗଣ 112/111/222/122
(ବିଲୋମେ ଆଦ୍ୟକ୍ଷରହୀନା)
========X
ପାତଶୀଳା
ପାଦ 1,3 ସଗଣ ନଗଣ ମଗଣ ୟଗଣ 112/111/222/122
ପାଦ 2,4 ତଗଣ ମଗଣ ରଗଣ+ଗା 221/222/212+ଗୁ
(ବିଲୋମେ ସଂଯୁକ୍ତା)
====================

## 2.3 ବିଷମ ବାର୍ଣ୍ଣିକ ଛନ୍ଦ ବା ବୃତ୍ତ ପ୍ରକରଣ

====================
ଛନ୍ଦୋନାମ: ସୌରଭକ
ପାଦ 1 ସଗଣ ଜଗଣ ସଗଣ+ଲ 112/121/112+1
ପାଦ 2 ନଗଣ ସଗଣ ଜଗଣ+ଗା 111/112/211+2
ପାଦ 3 ରଗଣ ନଗଣ ଭଗଣ+ଗା 212/111/211+2

ପାଦ 4

ସଗଣ ଜଗଣ ସଗଣ ଜଗଣ+ଗା 112/121/112/121+2

===================

===================

ଉଦ୍ଗତା

ପାଦ 1 ସଗଣ ଜଗଣ ସଗଣ+ଲ 112/121/112+1

ପାଦ 2 ନଗଣ ସଗଣ ଜଗଣ+ଗା 111/112/121+2

ପାଦ 3

ଭଗଣ ନଗଣ ଜଗଣ + ଲଗୁ 211/111/121+12

ପାଦ 4

ସଗଣ ଜଗଣ ସଗଣ ଜଗଣ+ଗା 112/121/112/121+2

===================

===================

ଲଳିତ

ପାଦ 1 ସଗଣ ଜଗଣ ସଗଣ+ଲ 112/121/112+1

ପାଦ 2 ନଗଣ ସଗଣ ଜଗଣ+ଗା 111/112/121+2

ପାଦ 3 ନଗଣ ନଗଣ ସଗଣ ସଗଣ 111/111/112/112

ପାଦ 4

ସଗଣ ଜଗଣ ସଗଣ ଜଗଣ+ଗା 112/121/112/121+2

===================

===================

ଉପସ୍ଥିତପ୍ରଚୁପିତ

ପାଦ 1

ମଗଣ ସଗଣ ଜଗଣ ଭଗଣ+ଗାଗା 222/112/121/211+22

ପାଦ 2

ସଗଣ ନଗଣ ଜଗଣ ରଗଣ+ଗା 112/111/121/212+2

ପାଦ 3 ନଗଣ ନଗଣ ସଗଣ 111/111/112

ପାଦ 4

ନଗଣ ନଗଣ ନଗଣ ଜଗଣ ୟଗଣ 111/111/111/121/122

===================

===================

ଶୁଦ୍ଧବିରାଡୃଷଭ

ପାଦ 1

ମଗଣ ସଗଣ ଜଗଣ ଭଗଣ+ଗାଗା 222/112/121/211+22

ପାଦ 2

ସଗଣ ନଗଣ ଜଗଣ ରଗଣ+ଗା 112/111/121/212+2

ପାଦ 3

ତଗଣ ଜଗଣ ରଗଣ 221/121/212

ପାଦ 4

ନଗଣ ନଗଣ ନଗଣ ଜଗଣ ୟଗଣ 111/111/111/121/122

====================

====================

ବର୍ଦ୍ଧମାନ

ପାଦ 1 ମ ସ ଜ ଭ+ଗାଗା 222/112/121/211+22

ପାଦ 2 ସ ନ ଜ ର+ଗା 112/111/121/2122

ପାଦ 3 ନ ନ ସ ନ ନ ସ111/111/112/111/111/112

ପାଦ 4 ନ ନ ନ ଜ ୟ 111/111/111/111/112

====================

# ତୃତୀୟ ଅଧ୍ୟାୟ: ମାତ୍ରିକ ଛନ୍ଦ ପ୍ରକରଣ

ବାର୍ଣ୍ଣିକ ଛନ୍ଦରେ ଯେପରି ବର୍ଣ୍ଣକ୍ରମାନୁଯାୟୀ ଗଣ ବ୍ୟବସ୍ଥା ଅଛି ମାତ୍ରିକ ଛନ୍ଦରେ ସେପରି ମାତ୍ରା ସଂଖ୍ୟାନୁଯାୟୀ ମାତ୍ରିକ ଗଣର ନାମ ଦିଆ ଯାଇଛି । ସେ ଗେଡିକ ହେଲା ଟଗଣ 6 ମାତ୍ରା, ଠଗଣ 5 ମାତ୍ରା, ଡଗଣ 4 ମାତ୍ରା, ଢଗଣ 3 ମାତ୍ରା ଓ ଣଗଣ 2 ମାତ୍ରାର ସମାହାରର ନାମ । ଏହା ଛଡା 2 ମାତ୍ରାର ସମଷ୍ଟିକୁ ଦ୍ବିକଳ (ଦୁଇ କଳା ବିଶିଷ୍ଟ), 3 ମାତ୍ରାର ସମଷ୍ଟିକୁ ତ୍ରିକଳ ଓ ତେଣିକି ଚତୁଷ୍କଳ, ପଞ୍ଚକଳ... ଅଷ୍ଟକଳ, ନବକଳ ଆଦି କହି ମଧ ଛନ୍ଦ ଚର୍ଚ୍ଚାରେ ଭାବ ପ୍ରକାଶ କରା ଯାଇ ପାରିବ । ବାର୍ଣ୍ଣିକ ଛନ୍ଦ ବା ବର୍ଣ୍ଣଛନ୍ଦ ବା ଗଣଛନ୍ଦରେ ବର୍ଣ୍ଣବିଧାନ ପରି ମାତ୍ରିକ ଛନ୍ଦରେ ମାତ୍ରାସଂଖ୍ୟାର ବିଧାନ ମାନିବାକୁ ପଡିବ ।

ସମମାତ୍ରିକଛନ୍ଦାଂସି

ଯେଉଁ ମାତ୍ରିକ ଛନ୍ଦରେ ଚାରିଟି ଯାକ ପାଦର ବିଧାନ ଅଭିନ୍ନ ଥାଏ ତାହା ସମମାତ୍ରିକ ଛନ୍ଦ । ଏଥିରେ ପ୍ରତିଟି ଅକ୍ଷର କେଉଁଠି ଲଘୁ କି ଗୁରୁ ହେବ ସେ କଠୋର ଶୃଙ୍ଖଳା ନ ଥାଇ ମୋଟ ମାତ୍ରା ବା ଉଚ୍ଚାରଣ କାଳ ଗଣନ ନିୟମ ଥାଏ । ଏଥିରେ ଲଘୁବର୍ଣ୍ଣର ଏକ ମାତ୍ରା ଓ ଗୁରୁବର୍ଣ୍ଣର ଦୁଇ ମାତ୍ରା ହୁଏ । ତତ୍ସହ ପାଦର କିଛି ଅଂଶରେ ବାର୍ଣ୍ଣିକ ଛନ୍ଦ ପରି ବର୍ଣ୍ଣ ବିଧାନ ମଧ ଅଧିକାଂଶ କ୍ଷେତ୍ରରେ ରହେ । ଯଥା: ରାମ 2+1= ୩ ମାତ୍ରା, ରାବଣ 2+1+1= 4 ମାତ୍ରା, ଦୁଃଖୀ ଧନ 2-2+1+1= ଛ ମାତ୍ରା, ସରିତ୍ ,1+2= 3 ମାତ୍ରା, କଂସର ଚିଟାଉ 2+1+1+1+2+1= ସାତ ମାତ୍ରା ନୀଳକଣ୍ଠ 2+1+2+1= ଛ ମାତ୍ରା ଇତ୍ୟାଦି ।

ବାର୍ଣ୍ଣିକ ଛନ୍ଦରେ ଯେପରି ପାଦର ମୋଟ ଅକ୍ଷର ସଂଖ୍ୟା ଭେଦରେ ଉକ୍ତା ଅତ୍ୟୁକ୍ତା ମଧ୍ୟା ପ୍ରତିଷ୍ଠା ସୁପ୍ରତିଷ୍ଠା ଗାୟତ୍ରୀ ଉଷ୍ଣିକ୍ ଅନୁଷ୍ଟୁପ୍ ଆଦି ଶ୍ରେଣୀ ନାମ (group name) ଅଛି ସେହି

ପରି ମାତ୍ରିକ ଛନ୍ଦରେ ମଧ ମୋଟ ମାତ୍ରା ଅନୁଯାୟୀ ବିଭିନ୍ନ ଶ୍ରେଣୀ ନାମ ଅଛି । ତେବେ 7 ରୁ ଅଳ୍ପ ମାତ୍ରାର ମାତ୍ରିକ ଛନ୍ଦର ପ୍ରଚଳନ ଦେଖା ଯାଏ ନାହିଁ । ତେଣୁ ନିମ୍ନରେ 7 ଓ ତଦୁର୍ଦ୍ଧ୍ୱ ସଂଖ୍ୟକ ମାତ୍ରା ବିଶିଷ୍ଟ ସମମାତ୍ରିକ ଛନ୍ଦଗୁଡିକର ଶ୍ରେଣୀ ନାମ, ଛନ୍ଦୋନାମ ବିଧାନ ଓ କିଛି ଉଦାହରଣ ଦିଆ ଗଲା ।

| ମାତ୍ରା ସଂଖ୍ୟା | ଛନ୍ଦର ଶ୍ରେଣୀ ନାମ |
|---|---|
| 07 | ଲୌକିକ |
| 08 | ବାସବ |
| 09 | ଆଙ୍କ |
| 20 | ଦୈଶିକ |
| 11 | ରୌଦ୍ର |
| 12 | ଆଦିତ୍ୟ |
| 13 | ଭାଗବତ |
| 14 | ମାନବ |
| 15 | ତୈଥିକ |
| 16 | ସଂସ୍କାରୀ |
| 17 | ମହାସଂସ୍କାରୀ |
| 18 | ପୌରାଣିକ |
| 19 | ମହାପୌରାଣିକ |
| 20 | ମହାଦୈଶିକ |
| 21 | ତ୍ରୈଲୋକ |
| 22 | ମହାରୌଦ୍ର |
| 23 | ରୌଦ୍ରାର୍କ |
| 24 | ଅବତାରୀ |
| 25 | ମହାବତାରୀ |
| 26 | ମହାଭାଗବତ |
| 27 | ନାକ୍ଷତ୍ରିକ |
| 28 | ଯୌଗିକ |
| 29 | ମହାଯୌଗିକ |
| 30 | ମହାତୈଥିକ |
| 31 | ଅଶ୍ୱାବତାରୀ |
| 32 | ଲାକ୍ଷଣିକ |
| 33 ଓ ତଦୁର୍ଦ୍ଧ୍ୱ | ଦଣ୍ଡକ |

## 3.1 ସମମାତ୍ରିକ ଛନ୍ଦ ବା ବୃତ୍ତ ପ୍ରକରଣ

(୧) ଲୌକିକ (ମାତ୍ରା - ୭)

ଛନ୍ଦ: ସୁଗତି ଅନ୍ତ 2

ଆଣ ଖାତା ଖୋଲି ଦେଖା
ସରିଲା କି ନା ତୋର ଲେଖା ।

(୨) ବାସବ (ମାତ୍ରା - 8)

ଛନ୍ଦ: ଛବି ଅନ୍ତ ଜଗଣ (121)

ମୋ ଘରକୁ ଆସ କହ ସବୁ ବୁଝାଇ
ଭୂଗୋଳ ପାଠ ସରିଲା କି ନାହିଁ

(୩) ଆଙ୍କ (ମାତ୍ରା - 9)

ଛନ୍ଦ: ଗଙ୍ଗ ଅନ୍ତ 22

ଗଳବ୍ରତ ପୃଷ୍ଟେ ହେ ଜବିତହସ୍ତା
ଦେଇ ସବୁ ବିଦ୍ୟା ସରସ୍ୱତି ମାତା । 1
ମୋ ପରେ କେତେ ରାଗିଅଛି ମାମା
ଜାଣିନି ମୁଁ ଏବେ ଭଲ ପିଲାଟେ ମା ।2

ଛନ୍ଦ: ନିଧି ଅନ୍ତ ଲଘୁ (1)

ଯିବା ପୋଖରୀକୁ ଖରା ଟିକେ ହେଉ
ମିଳିଯିବ ତା ପଙ୍କୁ ମାଛ ବେଳ ଥାଉଁ ।

(୪) ଦୈଶିକ (ମାତ୍ରା - ୧୦)
ଛନ୍ଦ: ଦୀପ ଅନ୍ତ 11121

ଅନ୍ଧଙ୍କୁ ଦିଶୁ ନାହିଁ ତଥାପି ଅଛି ତ ଚାନ୍ଦ
କେହି ଯଦି ବି ନ ମାନ କବି ତ ରଚି ଯିବ ଛନ୍ଦ ।

(୫) ରୌଦ୍ର (ମାତ୍ରା - ୧୧)

ଛନ୍ଦ: ଶିବ ଅନ୍ତ ନଗଣ, ସଗଣ ବା ରଗଣ

ଭାରତ ପୁଣ୍ୟର ଧରଣି	ବେଦ ଶାସ୍ତ୍ର ଅଛି ସକଳ
ଏଠାରେ ଦେବତା	ହେଉ ଅଛନ୍ତି ପ୍ରଚଳ । 1
ହୁଏ ଯଜ୍ଞ ଏ ସ୍ଥଳେ	ଅନ୍ୟ ଦେଶେ ନ ମିଳେ
ଏତେ ତୀର୍ଥ କେଉଁଠି ବି	ନାହିଁ ଏ ଧରା ତଳେ । 2

ଛନ୍ଦ: ଅହୀର (ଅଭୀର) ଅନ୍ତ ଜଗଣ (121)

(୬) ଛନ୍ଦ: ଆଦିତ୍ୟ (ମାତ୍ରା - ୧୨)

ଛନ୍ଦ: ତୋମର ଅନ୍ତ ଗୁରୁଲଘୁ

ଛନ୍ଦ: ତୋମର ଅନ୍ତେ 21

ଦେଶକୁ ଘୋଟିଲା କାଳ,	ତାତି ବୁହାଇଲା ଝାଳ
ପୋଖରୀରେ ଜଳ ନାହିଁ,	ମାଟି ଦିଶୁଛି ଫାଳ ଫାଳ ।1

ଛନ୍ଦ: ତାଣ୍ଡବ ଆଦି ଲଘୁ ଅନ୍ତ ଲଘୁ

ଛନ୍ଦ: ଲୀଳା ଅନ୍ତ ଜଗଣ

(7) ଭାଗବତ (ମାତ୍ରା - ୧୩)

ଛନ୍ଦ: ଚଣ୍ଡିକା ଅନ୍ତ ଜଗଣ (121)

ଯେତେ ଉପରେ ଯିବ ଯାଅ	ମର୍ତ୍ତ୍ୟ ଛାଡି କେ ଯିବ ନାହିଁ
ପଢ ଯେତେ ପାରୁଛ ପାଠ	ପାଠ କେବେ ସରିବ ନାହିଁ ।

(୮) ମାନବ (୧୪ - ମାତ୍ରା)

ଛନ୍ଦ: ସଖୀ ଅନ୍ତ ୟଗଣ ବା ମଗଣ

ସମସ୍ତେ ଥାଅ ଆନନ୍ଦେ	ଆଶଙ୍କା ରଖ ନା ଚିତ୍ତେ ।
କେବେ ବି ନ ଭାଳ ପ୍ରମାଦେ	ଆଶା ନେଇ ଅପର ବିତ୍ତେ ।

ଛନ୍ଦ: ମଧୁମାଳତୀ 7,7 ଅନ୍ତ ରଗଣ (212)

କଳକଳ ସ୍ୱର ମଧୁମାଳତୀ, ଲେଖ ହସିବେ ମା ଭାରତୀ ।
ତହିଁରେ ଲେଖ ମଧୁ ଗୀତିକା ଗାଅ ଜଳାଇ ଅଗଣାବତୀ ।

ଛନ୍ଦ: ମନୋରମ ଆଦି ଲଘୁ, ଅନ୍ତ ୟଗଣ ବା ଭଗଣ

ତୁମେ ମୋହର ଶେଷ ଆଶ୍ରା ତୁମେ ଥିଲେ ତ ନାହିଁ ବାଧା ।
ମୁଁ ନିଜେ ଲେଖି ଦିବସ ସାରା ରଖିବି ପାଶେ ପୂରୁ ଖାତା ।

(୯) ଛନ୍ଦ: ତୈଥିକ (ମାତ୍ରା - ୧୫)

ଛନ୍ଦ: ଗୋପୀ ଆଦି ଢଗଣ (ତ୍ରିକଳ) ଅନ୍ତ ଗୁରୁ (2)

ରୋଗ ଦିଅନ୍ତି ନାହିଁ ଦେବତା ଅଦୃଶ୍ୟ କୀଟ ରୋଗ ମୂଳରେ ।
କୀଟ ମଲେ ଶରୀର ଭଲ ହୁଏ ମରନ୍ତି କୀଟାଣୁ ଔଷଧରେ ।

ଛନ୍ଦ: ଉଜ୍ଜ୍ୱଳା ଅନ୍ତ ରଗଣ (212)

ଆସ ସାଥୀ ଯାତ ଦେଖିବା ବଡଦାଣ୍ଡେ ଭିଡ ବଢି ଚାଲିଲା
ଜଗନ୍ନାଥଙ୍କ ରଥ ପାଇବା ଛୁଟୁଥିବ ନନ୍ଦିଘୋଷ ନାମରେ ।

ଛନ୍ଦ: ପୁନୀତ ଅନ୍ତ ତଗଣ (221)

(୧୦) ସଂସ୍କାରୀ (ମାତ୍ରା - ୧୬)

ଛନ୍ଦ: ପାଦାକୁଳକ: ଚାରି ଡଗଣ (ଚତୁଷ୍କଳ)ର ସମାହାର ଅର୍ଥାତ୍ ମାତ୍ରା ୪,୫ ମିଶି, ମାତ୍ରା ୮,୯ ମିଶି ବା ମାତ୍ରା ୧୨,୧୩ ମିଶି ଗୁରୁ ବର୍ଣ୍ଣ ହେବ ନାହିଁ ।

ଛନ୍ଦ: ଅରିଲ୍ଲ: ଅନ୍ତ ଲଘୁଲଘୁ (11) ଅଥବା ୟଗଣ (122), କୌଣସି ଡଗଣ (ଚତୁଷ୍କଳ) ଜଗଣ (121) ହେବ ନାହିଁ ।

ଛନ୍ଦ: ଉପଚିତ୍ରା: ୪ ମାତ୍ରା ୯,୧୦ ମିଶି ଗୁରୁ, ଅନ୍ତ ଗୁରୁ, ପ୍ରତି ପାଦରେ ଅନ୍ତତଃ ଗୋଟିଏ ଡଗଣ ଜଗଣ (121) ହେବ ।

ଛନ୍ଦ: ପଜ୍ଝଟିକା: ୪ ଡଗଣ, ମାତ୍ରା ୯,୧୦ ମିଶି ଗୁରୁ, ଅନ୍ତ ଗୁରୁ, କୌଣସି ପାଦର କୌଣସି ଚତୁଷ୍କଳ ବା ଡଗଣ ଜଗଣ (121) ହେବ ନାହିଁ ।

ଛନ୍ଦ: ବିଶ୍ଳୋକ: ୫ମ ୮ମ ଓ ୯ମ ମାତ୍ରା ଲଘୁ ହେବ

ଛନ୍ଦ: ଶୃଙ୍ଗାର: ଆଦି ଢଗଣ (ତ୍ରିକଳ)+ ଣଗଣ (ଦ୍ୱିକଳ), ଅନ୍ତ ଗୁରୁଲଘୁ (21)

(୧୧) ମହାସଂସ୍କାରୀ (ମାତ୍ରା - ୧୭)

ଛନ୍ଦ: ରାମ ନବକଳ+ ଅଷ୍ଟକଳ, ଅନ୍ତ ୟଗଣ (122)

ଛନ୍ଦ: ଚନ୍ଦ୍ର ଦଶକଳ+ ସପ୍ତକଳ

(୧୨) ପୌରାଣିକ (ମାତ୍ରା - ୧୮)

ଛନ୍ଦ: ଶକ୍ତି ରଚନାକ୍ରମ 3+3+4+3+5, ପ୍ରଥମ, ଷଷ୍ଠ, ଏକାଦଶ ଓ ଶୋଡଷ ମାତ୍ରା ଲଘୁ ଅନ୍ତ ନଗଣ, ସଗଣ ବା ରଗଣ ।

ଛନ୍ଦ: ବନ୍ଦନ ଅନ୍ତ ଗୁରୁଲଘୁ (21)

ଛନ୍ଦ: ପୁରାରି 7+11 ଅନ୍ତ ଗୁରୁ

(୧୩) ମହାପୌରାଣିକ (ମାତ୍ରା - ୧୯)

ଛନ୍ଦ: ପୀୟୂଷବର୍ଷ ୧୦+୯, ଅନ୍ତ ଲଘୁଗୁରୁ

ଛନ୍ଦ: ସଗୁଣା ରଚନାକ୍ରମ 5+5+5+4 ଆଦି,ଲଘୁ ଅନ୍ତ ଜଗଣ (121)

ଛନ୍ଦ: ନରହରି ଅନ୍ତ ନଗଣ+ଗୁରୁ (1112)

(୧୪) ମହାଦୈଶିକ (ମାତ୍ରା - ୨୦)

ଛନ୍ଦ: ଯୋଗ ରଚନାକ୍ରମ 12+8, ଅନ୍ତ ୟଗଣ (122)

ଛନ୍ଦ: ହଂସଗତି ରକ୍ର 11+9

ଛନ୍ଦ: ମଞ୍ଜୁଳିକା ରକ୍ର 12+8 ଅନ୍ତ ଜଗଣ (121)

ଛନ୍ଦ: ଅରୁଣ ରକ୍ର 5+5+10, ଅନ୍ତ ରଗଣ (212)

(୧୫) ତ୍ରୈଲୋକ (ମାତ୍ରା - ୨୧)

ଛନ୍ଦ: ଚାନ୍ଦ୍ରାୟଣ

ସପ୍ତକଳ ବା 7 ମାତ୍ରା+ ଜଗଣ (121) - ଯତି - ପଞ୍ଚକଳ ବା 5 ମାତ୍ରା+ ରଗଣ (212) ।

ରାମ ରାମ ତୁହି ଡାକ, କୃଷ୍ଣଙ୍କୁ ଡାକୁ ଥା
ଶୁଣିବେ ତୋହର ଡାକ ସରିଯିବ ସବୁ ବ୍ୟଥା ।
ମନେ ତୁ ନ ରଖ ଭୀତି ଡାକୁଥିବୁ ଭକ୍ତିରେ
ଦେଖିବୁ ନାମର ଶକ୍ତି ସମୟ ଯିବ ଶାନ୍ତିରେ ।

ଛନ୍ଦ: ପ୍ଲବଙ୍ଗମ 8+13, ଆଦି ଗୁରୁ ଅନ୍ତ ଜଗଣ ଗା (1212)

ଛନ୍ଦ; ସନ୍ତ 3+6+6+6, ଅନ୍ତ ସଗଣ (112)

ଛନ୍ଦ: ଭାନୁ 15+6, ଅନ୍ତ ଗାଲ (21)

(୧୬) ମହାରୌଦ୍ର (ମାତ୍ରା - ୨୨)

ଛନ୍ଦ: ରାସ 8+8+6, ଅନ୍ତ ସଗଣ (112)

ଛନ୍ଛ: ରାଧିକା 16+6

ଛନ୍ଦ: ବିହାରୀ 14+8

ଛନ୍ଦ: କୁଣ୍ଡଳ 12+10, ଅନ୍ତ ଗଯୁଗ୍ମ (22)

ଛନ୍ଦ: ସୁଖଦା 12+10, ଅନ୍ତ ଗା (2)

(୧୭) ରୌଦ୍ରାର୍କ (ମାତ୍ରା - ୨୩)

ଛନ୍ଦ: ଉପମାନ 13+10, ଅନ୍ତ ଗଯୁଗ୍ମ (22)

ଛନ୍ଦ: ସମ୍ପଦା 11+12, ଅନ୍ତ ଜଗଣ (121)

ଛନ୍ଦ: ଅବତାର 13+10
(ଅନ୍ତ ରଗଣ ବା 212 କଲେ ମଧୁରତା ବୃଦ୍ଧି ।)

ଛନ୍ଦ: ସୁଜାନ 14+9, ଅନ୍ତ ଗୁରୁଲଘୁ (21)

ଛନ୍ଦ: ନିଶ୍ଚଳ 16+7, ଅନ୍ତ ଗୁରୁଲଘୁ (21)

ଛନ୍ଦ: ମୋହନ 5+6+6+6

ଛନ୍ଦ: ରୋଳା (ମାତ୍ରା - ୨୪; ଯତି ୧୧,୧୩)

ଏହାର ପ୍ରତି ପାଦରେ •ପ୍ରଥମେ 4+4++3 କିମ୍ବା 3+3+2+3, ଏପରି ୧୧ ମାତ୍ରା ରହିବ ଓ ଯତି ବା ପଠନରେ ବିରତି ହେବ । •ତା ପରେ 3+2+4+4 ଅଥବା 3+2+3+3+2 ଏହି ରଚନାକ୍ରମର କ୍ରମରେ ୧୩ ମାତ୍ରା ରହି ପାଦର ମୋଟ ମାତ୍ରା ୨୪ ହେବ । •ଅନ୍ତ ଗୁରୁବର୍ଣ୍ଣ (2) ହେଲେ ମଧୁର । (ଏହିପରି ୪ ପାଦ ମିଶି ୯୬ ମାତ୍ରାରେ ଏକ ପଦ ହେବ ।)

(୧୮) ଅବତାରୀ (ମାତ୍ରା - ୨୪)

ଛନ୍ଦ: ଦିଗପାଳ 12+12

ଛନ୍ଦ: ରୂପମାଳା 14+10, ଅନ୍ତ ଗୁରୁଲଘୁ (21)

ଛନ୍ଦ: ଶୋଭନ 14+10, ଅନ୍ତ ଜଗଣ (121)

ଛନ୍ଦ: ଲୀଳା 7+7+10, ଅନ୍ତ ସଗଣ (112)

ଛନ୍ଦ: ସୁମିତ୍ର 10+14, ଆଦି ଜଗଣ, ଅନ୍ତ ଜଗଣ

ଛନ୍ଦ: ସାରସ 12+12, ଆଦି ଗୁରୁ (2)

(୧୯) ମହାବତାରୀ (ମାତ୍ରା - ୨୫)

ଛନ୍ଦ: ଗଗନାଙ୍ଗନା 16+9, ଅନ୍ତ ରଗଣ (212)

ଛନ୍ଦ: ମୁକ୍ତାମଣି 13+12, ଅନ୍ତ ଗଯୁଗ୍ମ (22)

ଛନ୍ଦ: ସୁଗୀତିକା 15+10, ଅନ୍ତ ଗୁରୁଲଘୁ (21)

ଛନ୍ଦ: ନାଗ 10+8+7, ଅନ୍ତ ଗୁରୁଲଘୁ (21)

(୨୧) ମହାଭାଗବତ (ମାତ୍ରା - ୨୬)

ଛନ୍ଦ: ଶଙ୍କର 16+10, ଅନ୍ତ ଗୁରୁଲଘୁ (21)

ଛନ୍ଦ: ବିଷ୍ଣୁପଦ 16+10, ଆନ୍ତ ଗୁରୁ (2)

ଛନ୍ଦ: କାମରୂପ 9+7+10, ଅନ୍ତ ଗୁରୁ (2)

ଛନ୍ଦ: ଗୀତିକା 14+12, ଅନ୍ତ ଲଘୁଗୁରୁ (12)

ଛନ୍ଦ: ଗୀତା 14+12, ଅନ୍ତ ଗୁରୁଲଘୁ (21)

(୨୨) ନାକ୍ଷତ୍ରିକ (ମାତ୍ରା - ୨୭)

ଛନ୍ଦ: ସରସୀ 16+11 ଅନ୍ତ ଗୁରୁଲଘୁ (21)

ଛନ୍ଦ: ଶୁଭଗୀତା 15+12, ଅନ୍ତ ରଗଣ (2127

ଛନ୍ଦ: ଶୁଦ୍ଧଗୀତା 14+13, ଅନ୍ତ ଗୁରୁଲଘୁ (21)

(୨୧) ଯୌଗିକ (ମାତ୍ରା - ୨୮)

ଛନ୍ଦ: ସାର 16+12, ଅନ୍ତ ଗଯୁଗ୍ମ (22)

ଛନ୍ଦ: ହରିଗୀତିକା 2+3+4+3+4 (ଯତି) 3+4+5 ।

ଚତୁଷ୍କଳଗୁଡିକରେ ଜଗଣ ନିଷିଦ୍ଧ । ଶେଷସ୍ଥ ପଞ୍ଚକଳ ରଗଣ (212) ହେଲେ ବହୁତ ଶ୍ରୁତିମଧୁର ।

ଛନ୍ଦ: ବିଧାତା 14+14

(୨୩) ମହାଯୌଗିକ (ମାତ୍ରା - ୨୯)

ଛନ୍ଦ: ମରହଟା 10+8+11, ଅନ୍ତ ଗୁରୁଲଘୁ (21)

ଛନ୍ଦ: ଧାରା 15+14, ଅନ୍ତ ଗୁରୁ (2)

(୨୪) ମହାତୈଥିକ (ମାତ୍ରା - ୩୦)

ଛନ୍ଦ: ରୁଚିରା 14+16, ଅନ୍ତ ଗୁରୁ (2)

ଛନ୍ଦ: ଶୋକହର 8+8+8+6, ଅନ୍ତଗୁରୁ (2)

(୨୫) ଅଶ୍ୱାବତାରୀ (ମାତ୍ରା - ୩୧)

ଛନ୍ଦ: ବୀର 16+15, ଅନ୍ତ ଗୁରୁ (2)

(୨୬) ଲାକ୍ଷଣିକ (ମାତ୍ରା - ୩୨)

ଛନ୍ଦ: ତ୍ରିଭଙ୍ଗୀ 10+8+8+6 ଅନ୍ତ ଗୁରୁ (2)

ଛନ୍ଦ: ପଦ୍ମାବତୀ 10+8+14, ଅନ୍ତ ଗୁରୁ (2):
(ନାମାନ୍ତରେ କମଳାଭତୀ) କୌଣସି ତଗଣ ଜଗଣ ହେବ ନାହିଁ

## 3.2 ଅର୍ଦ୍ଧସମମାତ୍ରିକଛନ୍ଦାଂସି

ଛନ୍ଦ: ମୋହନୀ (ଚାରି ପାଦ ମିଶି ୩୮ ମାତ୍ରା)

ବିଷମପାଦ (ପାଦ ୧, ୩) ୧୨-୧୨ ମାତ୍ରା । ସମପାଦ (ପାଦ ୨,୪) - ୭-୭ ମାତ୍ରା । ସମ ପାଦରେ ଅନ୍ତ ସଗଣ (112) ।

ଛନ୍ଦ: ଦୋହା (ଚାରି ପାଦ ମିଶି ୪୮ ମାତ୍ରା)

ବିଷମ ପାଦ (ପାଦ ୧ ଓ ୩): ମାତ୍ରା ୧୩-୧୩, ଆଦି ଜଗଣ ମନା । ସମ ପାଦ (ପାଦ ୨ ଓ ୪): ମାତ୍ରା ୧୧-୧୧, ଅନ୍ତ ଲଘୁ ।
ବିଷମପାଦର ଦୁଇ ପ୍ରମୁଖ ଭେଦ:
(1) 3+3+2+3+2 ଓ (2) 4+4+3+2 ।
ସେହିପରି ସମପାଦର ଦୁଇ ପ୍ରମୁଖ ଭେଦ:
(1) 4+4+3 ଓ (2) 3+3+2+3 ।
ଏ ଛନ୍ଦକୁ ଦୁଇ ଧାଡିରେ ଲେଖା ହୁଏ ।
ଟୀକା: ବିଷମ ଆଦି ଜଗଣ ହେଲେ ଚଣ୍ଡାଳିନୀ ଦୋହା ନାମ ହେବ । ଏହା ଦୂଷିତ ତେଣୁ ବର୍ଜନୀୟ ପଦ ।

ଛନ୍ଦ: ସୋରଠା (ଚାରି ପାଦ ମିଶି ୪୮ ମାତ୍ରା)

ଏହା ଦୋହାର ବିପରୀତ ଛନ୍ଦ । ଏହାର ବିଷମ ପାଦରେ ୧୧-୧୧ ମାତ୍ରା ଥାଇ ଦୋହାର ସମପାଦର ନିୟମ ଲାଗେ ଓ ସମପାଦରେ ୧୩-୧୩ ମାତ୍ରା ଥାଇ ଦୋହାର ବିଷମପଦର ନିୟମ ଲାଗେ ।

ଛନ୍ଦ: ଦୋହୀ ଉଲ୍ଲାସ (ଚାରି ପାଦ ମିଶି ୫୨ ମାତ୍ରା)

ଯେଉଁ ଛନ୍ଦର ସମପାଦରେ ୧୫-୧୫ ଓ ବିଷମରେ ୧୧-୧୧ ମାତ୍ରା ଥାଏ ତା ନାମ ଦୋହୀ ଛନ୍ଦ । ଉଭୟ ସମ ପାଦରେ ଶେଷସ୍ଥ ବର୍ଣ୍ଣ ଲଘୁ ହେବ ।

ଛନ୍ଦ: ଉଲ୍ଲାସ (ଚାରି ପାଦ ମିଶି ୫୬ ମାତ୍ରା)
ବିଷମ ପାଦ - ୧୫-୧୫ ମାତ୍ରା, ସମେ ୧୩-୧୩ ମାତ୍ରା ।

ଛନ୍ଦ: ହରିପଦ (ଚାରି ପାଦ ମିଶି ୫୪ ମାତ୍ରା)

ବିଷମେ (ପାଦ ୧ ଓ ୩ରେ) ୧୬-୧୬ ମାତ୍ରା । ସମେ (ପାଦ ୨ ଓ ୪ରେ) ୧୧-୧୧ ମାତ୍ରା ।

ଛନ୍ଦ: ଧତ୍ତା (ଚାରି ପାଦ ମିଶି ୬୨ ମାତ୍ରା)

ଏଥିରେ ସମେ ୧୮-୧୮ ଓ ବିଷମେ ୧୩-୧୩ ମାତ୍ରା ରହେ । ଉଭୟ ସମ ପାଦର ଶେଷରେ ନଗଣ (111) ରହେ ଓ ଏ ଛନ୍ଦକୁ ଦୁଇ ଧାଡିରେ ଲେଖା ହୁଏ ।

## ଉପଜାତି ଛନ୍ଦ:

କୌଣସି ପଦର ୪ଟି ଯାକ ପାଦ ଏକା ଛନ୍ଦର ନ ହେଇ ଦୁଇଟି ସଦୃଶ ଛନ୍ଦର ନିୟମରେ ବିଭିନ୍ନ ପାଦ ହେଇଥିଲେ ତାହା ଉପଜାତୀୟ ଛନ୍ଦ । ବକ୍ତବ୍ୟ ହେଲା କେବଳ ପାଦର ପ୍ରଥମ ବର୍ଣ୍ଣରେ ଲଘୁଗରୁ ପ୍ରଭେଦ ଥାଇ ବାକି ସମସ୍ତ ବର୍ଣ୍ଣରେ ଲଘୁ ଓ ଗୁରୁ ବର୍ଣ୍ଣର ସମାନତା ଥିଲେ ଉପଜାତି ହୁଏ । ତେଣୁ ପାଦଗୁଡିକର ସ୍ଥିତି ନେଇ ଏହା ଅର୍ଦ୍ଧସମ ବା ବିଷମ ଛନ୍ଦ ହେଇ ପାରିବ ସମଚ୍ଛନ୍ଦ କଦାପି ହେଇ ପାରିବ ନାହିଁ ।

ବଂଶସ୍ଥ ସହ ଇନ୍ଦ୍ରବଂଶା ଛନ୍ଦର ଇନ୍ଦ୍ରବଜ୍ରା ସହ ଉପେନ୍ଦ୍ରଭଜ୍ରାର ଦୋଧକର ପାଦ ସହ ରୋଧକ ଛନ୍ଦର ପାଦର ଦ୍ରୁତପଦ ସହ ଧୃଷ୍ଟପଦର ଓ ଏହି ପରି ଅନେକ ଛନ୍ଦଯୁଗ୍ମ ଅଛି ଯାହାର ମିଳନରେ ଉପଜାତି ଛନ୍ଦ ସୃଷ୍ଟି ହୁଏ ।

# 3.3 ବିଷମମାତ୍ରିକ ଛନ୍ଦାଂସି

ଛନ୍ଦ: ଗାହିନୀ (୪ ପାଦ ମିଶି ୬୨ ମାତ୍ରା):
•ପ୍ରଥମାର୍ଦ୍ଧରେ ପ୍ରଥମ ପାଦରେ ୩ ଚତୁଷ୍କଳ ମିଶି ୧୨ ମାତ୍ରା,
•ପ୍ରଥମାର୍ଦ୍ଧରେ ଦ୍ୱିତୀୟ ପାଦରେ ୪ ଚତୁଷ୍କଳ ପରେ ଗୋଟିଏ ଗୁରୁବର୍ଣ୍ଣ (2) ମିଶି ୧୮ ମାତ୍ରା,
•ଦ୍ୱିତୀୟାର୍ଦ୍ଧରେ ତୃତୀୟ ପାଦରେ ୩ ଚତୁଷ୍କଳ ମିଶି ୧୨ ମାତ୍ରା,
•ଦ୍ୱିତୀୟାର୍ଦ୍ଧରେ ଚତୁର୍ଥ ପାଦରେ ୫ ଚତୁଷ୍କଳ ମିଶି ୨୦ ମାତ୍ରା,
••ଏହି ପରି ପ୍ରଥମାର୍ଦ୍ଧରେ ୩୦ ଓ ଦ୍ୱିତୀୟାର୍ଦ୍ଧରେ ୩୨ ମାତ୍ରା ।

••ଉଭୟ ପ୍ରଥମାର୍ଦ୍ଧ ଓ ଦ୍ୱିତୀୟାର୍ଦ୍ଧରେ (1) ଷଷ୍ଠ ଚତୁଷ୍କଳ ଜଗଣ ହେବା ବିଧେୟ । (2) ଉଭୟ ଦ୍ୱିତୀୟ ତଥା ଚତୁର୍ଥ ପାଦର ଅନ୍ତ ଗୁରୁ ବର୍ଣ୍ଣ ହେବ । ଆର୍ଯ୍ୟା ଛନ୍ଦ ପଢିଲା ବେଳେ ଏ ସବୁ ଧାରଣା ସ୍ପଷ୍ଟତର ହେଇ ଯିବ ।

ଛନ୍ଦ: ସିଂହିନୀ (୪ ପାଦ ମିଶି ୬୨ ମାତ୍ରା):

ଗାହିନୀ ଛନ୍ଦର ପ୍ରଥମାର୍ଦ୍ଧର ସମସ୍ତ ନିୟମରେ ଦ୍ୱିତୀୟାର୍ଦ୍ଧ ଲେଖିଲେ ଓ ଗାହିନୀର ଦ୍ୱିତୀୟାର୍ଦ୍ଧର ସମସ୍ତ ନିୟମରେ ପ୍ରଥମାର୍ଦ୍ଧ ଲେଖିଲେ ଯେଉଁ ଛନ୍ଦ ସୃଷ୍ଟି ହେବ ତାର ନାମ ସିଂହିନୀ ଛନ୍ଦ ।

ଛନ୍ଦ: କୁଣ୍ଡଳିୟାଁ (୬ ପାଦ ମିଶି ୧୪୪ ମାତ୍ରା)

ଏହା ଛ ପାଦର ଛନ୍ଦ । ଏ ହେଲା ଏକ ପଦ ଦୋହା ପରେ ଏକ ପଦ ରୋଳାର ସମ୍ମିଶ୍ରଣ । ପ୍ରଥମେ ଏକ ଦୋହାର ପ୍ରଥମାର୍ଦ୍ଧ (13+11= 24 ମାତ୍ରା)କୁ ଗୋଟିଏ ଧାଡିରେ ଲେଖି ତା ତଳ ଧାଡିରେ ସେହି ଦୋହାର ଦ୍ୱିତୀୟାର୍ଦ୍ଧ ଲେଖିବାକୁ ପଡିବ । ଏହା ପରେ ତୃତୀୟ ଚତୁର୍ଥ ପଞ୍ଚମ ଓ ଷଷ୍ଠ ପାଦରେ (11,13 ଯତିରେ 24 ମାତ୍ରା ଥିବା) ରୋଳା ଛନ୍ଦର ଗୋଟିଏ ଲେଖା ପାଦ ଲେଖା ହେବ । ଏହି ପରି ଛ ଧାଡିରେ 24×6= 144 ମାତ୍ରରେ କୁଣ୍ଡଳିୟାଁର ଗୋଟିଏ ପଦ ହୁଏ ।

## 3.4 ଅନୁଷ୍ଟୁପ୍ ପ୍ରକରଣ

### ପଥ୍ୟାବକ୍ତ୍ର ଅନୁଷ୍ଟୁପ୍

ପଥ୍ୟାବକ୍ତ୍ର ଅନୁଷ୍ଟୁପ୍ ଏକ ଅର୍ଦ୍ଧସମ ମାତ୍ରିକ ଛନ୍ଦ । ସଂସ୍କୃତ ସାହିତ୍ୟରେ ଅନୁଷ୍ଟୁପ ଛନ୍ଦର ସର୍ବାଧିକ ପ୍ରୟୋଗ ହେଇଛି ଓ ତନ୍ମଧ୍ୟରେ ଏହି ପଥ୍ୟାବକ୍ତ୍ର ଅନୁଷ୍ଟୁପ୍ ବହୁଳ ମାତ୍ରାରେ ଉପଲବ୍ଧ ।

1- ଏହାର ପ୍ରତ୍ୟେକ ଚରଣରେ ଆଠ ବର୍ଣ୍ଣ ଓ ଛନ୍ଦରେ ମୋଟ ବତ୍ରିଶ ବର୍ଣ୍ଣ ।

2- ପ୍ରତି ପାଦର ପ୍ରଥମ ଓ ଶେଷ ଅକ୍ଷର ଲଘୁ ବା ଗୁରୁ ବର୍ଣ୍ଣ ଲେଖିବା ଯଥେଚ୍ଛା ବା କବୀଚ୍ଛାରେ ହେବ ।

3- ସର୍ବତ୍ର ପଞ୍ଚମ ବର୍ଣ୍ଣ ଲଘୁ ଓ ଷଷ୍ଠ ବର୍ଣ୍ଣ ଗୁରୁ ହେବ ।

4- ସପ୍ତମ ବର୍ଣ୍ଣ ପ୍ରଥମ ତୃତୀୟ ଚରଣ (ବିଷମ) ଚରଣରେ ଗୁରୁ ଓ ଦ୍ୱିତୀୟ ଚତୁର୍ଥ (ସମ) ଚରଣରେ ଲଘୁ ହେବ ।

5- ଦ୍ୱିତୀୟ ତୃତୀୟ ଓ ଚତୁର୍ଥ ବର୍ଣ୍ଣକୁ ନେଇ ଗଠିତ ଗଣ କୌଣସିଠି ନଗଣ ବା ସଗଣ ହେବ ନାହିଁ ଓ ଏହି ସ୍ଥାନରେ ସମ ଚରଣରେ ରଗଣ ମଧ ହେବ ନାହିଁ ।

ବ୍ୟତିକ୍ରମ:

1- ବିପୁଳା: ଏଥିରେ କଦବା ବ୍ୟତିକ୍ରମ ହେଲେ ସେ ଛନ୍ଦର ବିପୁଳା ସଂଜ୍ଞା ହେବ ଓ ନିୟମ ଭଙ୍ଗ କରି ଯେଉଁ ଗଣ ପଞ୍ଚମ ଷଷ୍ଠ ଓ ସପ୍ତମରେ ଥିବ ସେ ଚରଣକୁ ସେହି ଗଣ ନାମରେ ବିପୁଳା ହେଲା କହା ଯିବ ଯେ ପରି କି ନ-ବିପୁଳା ସ-ବିପୁଳା ଭ-ବିପୁଳା ତ-ବିପୁଳା ର-ବିପୁଳା ମ-ବିପୁଳା ।

2- ବିପୁଳାଭେଦ: ଯଦି କୌଣସି ଗୋଟିଏ ପାଦରେ ବ୍ୟତିକ୍ରମ ଥାଏ ତେବେ ତାହା ବ୍ୟକ୍ତିପକ୍ଷ ବିପୁଳା ଓ ଏକାଧିକ ଚରଣରେ ଏ ପରି ଘଟିଥିଲେ ତାହାକୁ ଜାତିପକ୍ଷ ବିପୁଳା କହା ଯିବ । ଏହି ପରି ବ୍ୟତିକ୍ରମ କରି ଲେଖା ଯାଇଥିବା ଏହି ଗଣଗୁଡିକ ଭିନ୍ନ ଭିନ୍ନ ପାଦରେ ଭିନ୍ନ ଭିନ୍ନ ହେଇ ଥିଲେ ତାହା ସଂକୀର୍ଣ୍ଣ ବିପୁଳାରେ ମାନ୍ୟ ହେବ ।

3- ଚପଳା: ଯଦି ଅଯୁଗ୍ମ ଅର୍ଥାତ୍ ପ୍ରଥମ ତୃତୀୟ - ଏ ଉଭୟ ଚରଣରେ ଚତୁର୍ଥ ଅକ୍ଷର ପରେ ନଗଣ ଥିବ ଓ ଯୁଗ୍ମ ବା ଦ୍ୱିତୀୟ ଚତୁର୍ଥ ଚରଣରେ ଚତୁର୍ଥ ଅକ୍ଷର ପରେ ୟଗଣ ଥିବ ତେବେ ତାହାର ଚପଳା ନାମ ହେବ ।

4- ବିପରୀତ ପଥ୍ୟାବକ୍ତ୍ର: ବିଷମଚରଣରେ ଚତୁର୍ଥ ଅକ୍ଷର ପରେ ଜଗଣ ରହିଲେ ଏହାର ପରିଚୟ ବିପରୀତ ପଥ୍ୟାବକ୍ତ୍ର ହେବ ।

ଯଦି ଚାରିଟି ଯାକ ଚରଣରେ ଚତୁର୍ଥ ଅକ୍ଷର ପରେ ୟଗଣ ଥିବ ତେବେ ତେବେ ସେହି ଛନ୍ଦଟିର ନାମ ଅନୁଷ୍ଟୁବ୍‌ବକ୍ତ୍ର ହେବ । ଯଦି ସମଚରଣରେ ଚତୁର୍ଥାକ୍ଷର ପରେ ଜଗଣ ଥିବ ତେବେ ପଥ୍ୟା ହେବ । ଏଭାବେ ପଥ୍ୟାବକ୍ତ୍ର ଅନୁଷ୍ଟୁପ୍ ହେଲେ ସେଥିରେ ପ୍ରଥମାକ୍ଷର ପରେ ନଗଣ ସଗଣ ମନା । ସମଚରଣ ୨ ଓ ୪ରେ ରେ ପ୍ରଥମୋତ୍ତର ରଗଣ ନ ରଖିବା ମଧ ଉପଦିଷ୍ଟ ।

ପଥ୍ୟାବକ୍ତ୍ର ଅନୁଷ୍ଟୁପ୍ ସୂତ୍ର

**श्लोके षष्ठं गुरुर्ज्ञेयं सर्वत्र लघु पञ्चमम् ।**
**द्विचतुः पादयोर्ह्रस्वं सप्तमं दीर्घमन्ययोः ॥ 1**
ଏ ଗଲା ଶ୍ଳୋକ କଥା ।

ଏବେ ପଥ୍ୟାବକ୍ତ୍ର ଶ୍ଳୋକ ବା ପଥ୍ୟାବକ୍ତ୍ର ଅନୁଷ୍ଟୁପ୍

ଶ୍ଳୋକେ ଷଷ୍ଠ ଗୁରୁ ଜ୍ଞେୟସର୍ବତ୍ର ଲଘୁ ପଞ୍ଚମ ।
ଦ୍ୱି ଚାରି ପାଦରେ ହ୍ରସ୍ୱ   ସପ୍ତମ ଦୀର୍ଘ ଅନ୍ୟରେ ॥1

ପ୍ରଥମୋତ୍ତର ବିନ୍ୟାସେ  ମନା ନସଗଣ ଦ୍ୱୟ
ତଥା ରଗଣ ସଂଯୋଗ   ସମପାଦେ ନିବାରିତ ॥ 3

ଲଲାଟେନ୍ଦୁ କବି   2022080121919

## 3.5 ବୈତାଳୀୟ ପ୍ରକରଣ

======
ବୈତାଳୀୟ (1)
======
ଯେଉଁ ଛନ୍ଦରେ ବିଷମଚରଣରେ (ପ୍ରଥମ ଓ ତୃତୀୟ ଚରଣରେ) 3 ଟି ଣଗଣ (ଟଗଣ- 6 ମାତ୍ରା, ଠଗଣ- 5 ମାତ୍ରା, ଡଗଣ- 4 ମାତ୍ରା, ଢଗଣ 3 ମାତ୍ରା ଓ ଣଗଣ 2 ମାତ୍ରାର ସମାହାରକୁ କହାଯାଏ) ପରେ ରଗଣ+ଲଗୁ ବର୍ଣ୍ଣ ହୁଏ ଓ ସମଚରଣରେ (ଦ୍ୱିତୀୟ ଓ ଚତୁର୍ଥ ଚରଣ୍ରେ) 4 ଟି ଣଗଣ ପରେ ରଗଣ+ ଲଘୁ, ଗୁରୁ ହୁଏ ସେହି ଛନ୍ଦ ବୈତାଳୀୟ । ଏଥିରେ ସମଚରଣରେ ଲାଗି ଲାଗି 6 ଟି ଲଘୁବର୍ଣ୍ଣ ନିବାରିତ ଅଛି ।

IIIIII21212   IIsIIII 21212
sss 21212   ssIIII 21212

======
ଔପଚ୍ଛନ୍ଦସିକ (2)
======
ବୈତାଳୀୟର ବିଷମ ଚରଣରେ 6 ମାତ୍ରା ଓ ସମ ଚରଣରେ 8 ମାତ୍ରା ପରେ ରଗଣ ଲଗୁ ନ ହେଇ ରଗଣ ଯଗଣ ରଖିଲେ ଯେଉଁ ଛନ୍ଦ ହୁଏ ତା ନାମ  ଔପଚ୍ଛନ୍ଦସିକ ।

sIIs 212/122   sIIIIs 212/122
IIIIII212/122   IIIIsII 212/122

======
ଆପାତଳିକା (3)
======

ବୈତାଳୀୟର ପ୍ରତି ଚରଣ ଶେଷସ୍ଥ ରଗଣ+ଲଘୁ ବଦଳରେ ଭଗଣ+ଗୁରୁ କଲେ ଯେଉଁ ଛନ୍ଦ ହୁଏ ତା ନାମ ଆପାତଳିକା ।

ssII 21122 IIsss 21122
IIss 21122 ssIIs 21122

======
ଦକ୍ଷିଣାନ୍ତିକା (4)
======

ବୈତାଳୀୟର ଅବଶିଷ୍ଟ ବିଧାନ ରକ୍ଷା କରି ସମସ୍ତ 4 ପାଦରେ ଦ୍ୱିତୀୟ ଓ ତୃତୀୟ ମାତ୍ରା ମିଶେଇ ଗୁରୁବର୍ଣ୍ଣ କଲେ ଯେଉଁ ଛନ୍ଦ ହୁଏ ତା ନାମ ଦକ୍ଷିଣାନ୍ତିକା ।

IsIs 21212 IsIss 21212
IsIII 21212 IsIIIII 21212

======
ଉଦୀଚ୍ୟବୃତ୍ତି (5)
======

ବୈତାଳୀୟର ଅବଶିଷ୍ଟ ବିଧାନ ରକ୍ଷା କରି କେବଳ ବିଷମ ଚରଣରେ ଦ୍ୱିତୀୟ ଓ ତୃତୀୟ ମାତ୍ରା ମିଶେଇ ଗୁରୁବର୍ଣ୍ଣ କଲେ ଉଦୀଚ୍ୟବୃତ୍ତି ହୁଏ ।

IIIIs 21212 IsIss 21212
sIIs 21212 IsIIIII 21212

======
ପ୍ରାଚ୍ୟବୃତ୍ତି (6)
======

ବୈତାଳୀୟର ଅବଶିଷ୍ଟ ବିଧାନ ରକ୍ଷା କରି କେବଳ ସମ ଚରଣରେ ଚତୁର୍ଥ ଓ ପଞ୍ଚମ ମାତ୍ରା ମିଶେଇ ଗୁରୁବର୍ଣ୍ଣ କଲେ ପ୍ରାଚ୍ୟବୃତ୍ତି ହୁଏ ।

IIIIs 21212 sIsIII 21212
IIss 21212 IIIsIII 21212

======
ପ୍ରବୃତ୍ତକ (7)
======

ବୈତାଳୀୟର ଅବଶିଷ୍ଟ ବିଧାନ ରକ୍ଷା କରି ଏହାର ବିଷମଚରଣରେ ଉଦୀଚ୍ୟବୃତ୍ତି ପରି ଦ୍ୱିତୀୟ ଓ ତୃତୀୟ ମାତ୍ରା ମିଶି ଗୁରୁ ବର୍ଣ୍ଣ ହେଲେ ତଥା ସମଚରଣରେ ପ୍ରାଚ୍ୟବୃତ୍ତି ପରି ଚତୁର୍ଥ ଓ ପଞ୍ଚମ ମାତ୍ରା ମିଶି ଗୁରୁ ବର୍ଣ୍ଣ ହେଲେ ଯେଉଁ ଛନ୍ଦ ହୁଏ ତା ନାମ ପ୍ରବୃତ୍ତକ ।

|sIII 21212　　sIsIII　21212
IsIs　21212　　sIsIs 21212

=====
ଅପରାନ୍ତିକା (8)
======

ପ୍ରବୃତ୍ତକର ସମମଚରଣ ସଦୃଶ ବିଷମଚରଣ କଲେ ଅର୍ଥାତ୍ ସମସ୍ତ 4 ଚରଣରେ 16-16-16-16 ମାତ୍ରା କରି ସବୁ ଚରଣରେ ଚତୁର୍ଥ ଓ ପଞ୍ଚମ ମାତ୍ରା ମିଶେଇ ଗୁରୁବର୍ଣ୍ଣ କଲେ ଓ ବୈତାଳୀୟ ସଦୃଶ ଶେଷ 8 ମାତ୍ରାରେ ରଗଣ+ଲଗୁ ରଖିଲେ ଯେଉଁ ଛନ୍ଦ ହୁଏ ତା ନାମ ଅପରାନ୍ତିକା ।

11IsIs　21212　　sIsIII　21212
sIsIII　21212　　IIIsIs　21212

=====
ଚାରୁହାସିନୀ (9)
======

ପ୍ରବୃତ୍ତକର ବିଷମଚରଣ ସଦୃଶ ସମଚରଣ କଲେ ଅର୍ଥାତ୍ ସମସ୍ତ 4 ଚରଣରେ 14 -14-14-14 ମାତ୍ରା କରି ସବୁ ଚରଣରେ ଦ୍ୱିତୀୟ ଓ ତୃତୀୟ ମାତ୍ରା ମିଶେଇ ଗୁରୁବର୍ଣ୍ଣ କଲେ ଓ ବୈତାଳୀୟର ସଦୃଶ ଶେଷ 8 ମାତ୍ରାରେ ରଗଣ+ଲଗୁ ରଖିଲେ ଯେଉଁ ଛନ୍ଦ ହୁଏ ତା ନାମ ଚାରୁହାସିନୀ ।

IsIs　21212　　IsIII 21212
IsIII 21212　　IsIs　21212

## 3.6 ଆର୍ଯ୍ୟା ପ୍ରକରଣ

ଏକ ସଂକ୍ଷିପ୍ତ ପରିଚୟ
ମାତ୍ରିକ ଛନ୍ଦ ଆର୍ଯ୍ୟା

ମାତ୍ରିକ ଛନ୍ଦରେ ଗଣ

ମାତ୍ରିକ ଛନ୍ଦରେ ଗଣ ନାମ ଓ ଗଣରେ ମାତ୍ରା ଗଣନା ଏହି ପରି ହୁଏ: ଟଗଣ 6 ମାତ୍ରା, ଠଗଣ 5 ମାତ୍ରା ଡଗଣ 4 ମାତ୍ରା ଢଗଣ 3 ମାତ୍ରା ଓ ଣଗଣ 2 ମାତ୍ରା ।

1- ଗଣ ନାମ ନ କହି କେବଳ ଗଣ କହିଲେ 4 ମାତ୍ରା ବା ଡଗଣ ବୁଝିବାକୁ ହେବ ।

2- ଡଗଣର ସଂଗଠନ 5 ପ୍ରକାର ସମ୍ଭବ ଯଥା 22, 112, 121, 211 & 1111 ।

ଆର୍ଯ୍ୟାର 4ଟି ପାଦ

•• ଆର୍ଯ୍ୟାର ପ୍ରଥମ ଓ ତୃତୀୟ ପାଦରେ 12-12 ମାତ୍ରା ରହେ, ଦ୍ୱିତୀୟରେ 18 ଓ ଚତୁର୍ଥ ପାଦରେ 15 ମାତ୍ରା ରହେ । ଅତଏବ ଏହାର ପୂର୍ବାର୍ଦ୍ଧରେ 12+ 18= 30 ଓ ଉତ୍ତରାର୍ଦ୍ଧରେ 12+ 15= 27 ମାତ୍ରା ରହେ । ପାଦ 2 ଓ 4ର ନିୟମ ଅସମ ଥିବାରୁ ଏହା ବିଷମ ମାତ୍ରିକ ଛନ୍ଦ ।

ପୂର୍ବାର୍ଦ୍ଧରେ ଗଣ ଓ ମାତ୍ରା

•• ଆର୍ଯ୍ୟାର ପୂର୍ବାର୍ଦ୍ଧର (ପାଦ 1 & 2 ମିଶି) 7 ଟି ଗଣ ପରେ ଗୋଟିଏ ଗୁରୁବର୍ଣ୍ଣ ରହେ ଓ 3ଟି ଗଣ (12 ମାତ୍ରା)ରେ ପ୍ରଥମ ପାଦ ସରି ତେଣିକି ଦ୍ୱିତୀୟ ପାଦ ଆରମ୍ଭ ହୁଏ ।

ଉତ୍ତରାର୍ଦ୍ଧରେ ଗଣ ଓ ମାତ୍ରା

•• ଆର୍ଯ୍ୟାର ଉତ୍ତରାର୍ଦ୍ଧରେ ମଧ (ପାଦ 3 & 4 ମିଶି) ମଧ 7 ଟି ଗଣ ଓ ଗୋଟିଏ ଗୁରୁ ବର୍ଣ୍ଣ ରହେ ତଥା 3ଟି ଗଣ (12 ମାତ୍ରା)ରେ ତୃତୀୟ ପାଦ ସରି ତେଣିକି ଚତୁର୍ଥ ପାଦ ଆରମ୍ଭ ହୁଏ । ତାରତମ୍ୟ ଏହି ଯେ ଆର୍ଯ୍ୟା ଛନ୍ଦର ଉତ୍ତରାର୍ଦ୍ଧରେ ଗୋଟିଏ ଲଘୁ ବର୍ଣ୍ଣକୁ ଗୋଟିଏ ଗଣର ମାନ୍ୟତା ଦିଆ ଯାଏ ଓ ଏହି ଏକମାତ୍ରା ବିଶିଷ୍ଟ ଗଣଟିକୁ ସପ୍ତମ ଗଣ କରି ଓ ଆବଶ୍ୟକ ସ୍ଥଳେ ଷଷ୍ଠ ଗଣ କରି ରଖିବାକୁ ହୁଏ, ଅନ୍ୟତ୍ର ନୁହେଁ । ଦ୍ୱିତୀୟାର୍ଦ୍ଧରେ ମଧ ଶେଷକୁ ରହେ ଗୁରୁ ବର୍ଣ୍ଣ ।

ଯତି ନିୟମ

ବୃତ୍ତରତ୍ନାକରାନୁଯାୟୀ ଆର୍ଯ୍ୟାରେ (ପାଦାନ୍ତ ଯତି ବାଦ) ନିମ୍ନ ମତେ ଯତିବିଧାନ ଅଛି ।

•• (କ) ଷଷ୍ଠ ଗଣ ନ୍ଲୌ (ନଗଣ+ ଲଘୁ) ଅର୍ଥାତ୍ ସର୍ବଲଘୁ ହେଲେ ତା ପ୍ରଥମାକ୍ଷର ଶେଷରେ ଯତି ହୁଏ । (।•।।।)

•• (ଖ) ସପ୍ତମ ଗଣ ସର୍ବଲଘୁ ହେଲେ ତା ପ୍ରଥମାକ୍ଷର ପୂର୍ବରୁ ଅର୍ଥାତ୍ ଷଷ୍ଠ ଗଣ ପରେ ଯତି ହୁଏ । (।ऽ।•।।।।)

•• (ଗ) ଉତ୍ତରାର୍ଦ୍ଧରେ ପଞ୍ଚମ ଗଣ ସର୍ବଲଘୁ ହେଲେ ତା ପ୍ରଥମାକ୍ଷର ପୂର୍ବରୁ ଅର୍ଥାତ୍ ଚତୁର୍ଥ ଗଣ ଶେଷରେ ଯତି ହୁଏ । (ଚତୁର୍ଥ ଗଣ / •।।।।)

ଜଗଣ ସଂଯମନ

•• ଆର୍ଯ୍ୟାରେ କୌଣସି ଅର୍ଦ୍ଧାଂଶର ବିଷମ ଗଣ ଅର୍ଥାତ୍ ଗଣ 1, 3, 5 କି 7 ଜଗଣ ହେବା ନିଷିଦ୍ଧ । ସମ ଗଣରେ (ଗଣ 2, 4 & 6ରେ) ଜଗଣ ରହି ପାରିବ । ଷଷ୍ଠରେ ଜଗଣ ରହିବ ବା ତା ବଦଳରେ 1111 ବା ନର୍ଲୌ ରହିବ । ତା ଛଡା ଦ୍ୱିତୀୟାର୍ଦ୍ଧର ଷଷ୍ଠ ଗଣରେ ଏକମାତ୍ରିକ ଗଣ କେବଳ 1 ମଧ୍ୟ ରହି ପାରିବ ।

ପଥ୍ୟା

•• ଯେଉଁ ଆର୍ଯ୍ୟାରେ ପ୍ରଥମାର୍ଦ୍ଧ ତଥା ଦ୍ୱିତୀୟାର୍ଦ୍ଧରେ 12-12 ମାତ୍ରାରେ ଏକ ଏକ ପାଦ ସମାପ୍ତ ହେଇ ପରବର୍ତ୍ତୀ ପାଦ ଆରମ୍ଭ ହୁଏ ତାହାକୁ ପଥ୍ୟା ଆର୍ଯ୍ୟା କହା ଯାଏ । ଅନ୍ୟ ଭାଷାରେ ପଥ୍ୟା ହିଁ ସମ୍ପନ୍ନ (perfect) ଆର୍ଯ୍ୟା ଛନ୍ଦ ।

ବିପୁଳା

•• ଯେଉଁ ଆର୍ଯ୍ୟାର କୌଣସି ଅର୍ଦ୍ଧାଂଶରେ 12 ମାତ୍ରାରେ ପାଦ ନ ସରି ଆଗକୁ ଲମ୍ବି ଯାଏ ତାହାର ବିପୁଳା ସଂଜ୍ଞା ହୁଏ । ବିପୁଳା 3 ପ୍ରକାର: ପୂର୍ବାର୍ଦ୍ଧରେ ବିପୁଳା ହେଲେ ଆଦିବିପୁଳା ବା ମୁଖବିପୁଳା, ଉତ୍ତରାର୍ଦ୍ଧରେ ବିପୁଳା ହେଲେ ଅନ୍ତବିପୁଳା ବା ଜଘନବିପୁଳା ଓ ଉଭୟତଃ ବିପୁଳା ହେଲେ ତାହା ଉଭୟବିପୁଳା ହୁଏ ।

ଚପଳା

•• ଯେଉଁ ଆର୍ଯ୍ୟାର ଗଣ 2 ଓ 4 ଜଗଣ ତଥା ଏହି ଉଭୟ ଜଗଣର ଉଭୟ ପାର୍ଶ୍ୱରେ ଗୁରୁ ବର୍ଣ୍ଣ ଥାଏ ସେହି ଆର୍ଯ୍ୟାର ଚପଳା ସଂଜ୍ଞା ହୁଏ । ସେ ମଧ୍ୟ 3 ପ୍ରକାର । ପୂର୍ବାର୍ଦ୍ଧରେ ଚପଳା ହେଇଥିଲେ ମୁଖଚପଳା, ଉତ୍ତରାର୍ଦ୍ଧରେ ଚପଳା ହେଇଥିଲେ ଜଘନଚପଳା ତଥା ଉଭୟ ଅର୍ଦ୍ଧାଂଶରେ ଚପଳା ହେଇଥିଲେ ତା ନାମ ମହାଚପଳା ହୁଏ ।

-1- -2- -3- -4- -5- -6- -7-
ଗୁ ଜଗଣ ଗୁଗୁ ଜଗଣ ଗୁ
112 121 22 121 211 121 211 2

ଉପରସ୍ଥ ଚିତ୍ରରେ ପ୍ରଥମ ଓ ଚତୁର୍ଥ ଗଣ ଜଗଣ ଓ ଉଭୟ ଗଣର ଉଭୟ ପାର୍ଶ୍ୱରେ ଗୁରୁବର୍ଣ୍ଣ ଅଛି । ଏହା ଚପଳା ଆର୍ଯ୍ୟାର ଲକ୍ଷଣ ।

ପ୍ରମୁଖ ଆର୍ଯ୍ୟା ଭେଦ

•• ଏବେ ପ୍ରଣିଧାନ୍ୟ ଯେ ଆର୍ଯ୍ୟା ମୂଳତଃ 1- ପଥ୍ୟା 2- ମୁଖବିପୁଳା ବା ଆଦିବିପୁଳା 3- ଜଘନବିପୁଳା ବା ଅନ୍ତବିପୁଳା ଅଥବା 4- ଉଭୟବିପୁଳା — ଏହି 4 ପ୍ରକାର ହେଇ ପାରେ । ପୁଣି ଏ ସବୁଥିରେ ମୁଖଚପଳା ଜଘନଚପଳା ଅଥବା ମହାଚପଳା ଲକ୍ଷଣ ରହି ପାରେ । ଅତଃ ଆର୍ଯ୍ୟାରେ ପ୍ରମୁଖତଃ ନିମ୍ନସ୍ଥ 16ଟି ଭେଦ ହେଲା । ତା ସାରଣୀ ନିମ୍ନରେ ପ୍ରଦତ୍ତ:

01 — ପଥ୍ୟା
02 ମୁଖବିପୁଳା / ଆଦିବିପୁଳା
03 ଜଘନବିପୁଳା / ଅନ୍ତବିପୁଳା
04 ଉଭୟବିପୁଳା

05 — ମୁଖଚପଳା ପଥ୍ୟା
06 ମୁଖଚପଳା-ମୁଖବିପୁଳା / ମୁଖଚପଳା-ଆଦିବିପୁଳା
07 ମୁଖଚପଳା-ଜଘନବିପୁଳା/ ମୁଖଚପଳା-ଅନ୍ତବିପୁଳା
08 ମୁଖଚପଳା-ଉଭୟବିପୁଳା

09 — ଜଘନଚପଳା ପଥ୍ୟା
10 ଜଘନଚପଳା-ମୁଖବିପୁଳା /ଜଘନଚପଳା-ଆଦିବିପୁଳା
11 ଜଘନଚପଳା-ଜଘନବିପୁଳା/ଜଘନଚପଳା-ଅନ୍ତବିପୁଳା
12 ଜଘନଚପଳା-ଉଭୟବିପୁଳା

13 — ମହାଚପଳା ପଥ୍ୟା
14 ମହାଚପଳା-ମୁଖବିପୁଳା / ମହାଚପଳା-ଆଦିବିପୁଳା
15 ମହାଚପଳା-ଜଘନବିପୁଳା/ମହାଚପଳା-ଅନ୍ତବିପୁଳା
16 ମହାଚପଳା-ଉଭୟବିପୁଳା

ବହିରେ ଥିବା ଆର୍ଯ୍ୟାଛନ୍ଦର ମୋଟ 80ଟି ଭେଦ ଭିତରୁ ଏ 16ଟି ପ୍ରମୁଖ ଭେଦ ଜାଣିଲେ ।

ଗୀତି

•• ଆର୍ଯ୍ୟାର ଦ୍ୱିତୀୟାର୍ଦ୍ଧର ମାତ୍ରା ବଢେଇ ପ୍ରଥମାର୍ଦ୍ଧ ସହ ସମାନ (12+ 18= 30 ମାତ୍ରା) କଲେ ତା ନାମ ଗୀତି । ଏଥିରେ ମଧ ଷଷ୍ଠ ଗଣ ଜଗଣ ବା ପରିବର୍ତ୍ତେ ନଲୌ ବା (1111) ରଖା ଯାଇ ପାରିବ ।

ଉପଗୀତି

•• ଆର୍ଯ୍ୟାର ପ୍ରଥମାର୍ଦ୍ଧର ମାତ୍ରା କମେଇ ଦ୍ୱିତୀୟାର୍ଦ୍ଧ ସହ ସମାନ (12+ 15= 27 ମାତ୍ରା) କଲେ ତା ନାମ ଉପଗୀତି । ଏଥିରେ ମଧ ଷଷ୍ଠ ଗଣ ଜଗଣ ବା ପରିବର୍ତ୍ତେ ନଲୌ ବା (1111) ରଖା ଯାଇ ପାରିବ ।

ଉଦ୍ଗୀତି

•• ଆର୍ଯ୍ୟାର ଦ୍ୱିତୀୟାର୍ଦ୍ଧ ନିୟମରେ (12+ 15= 27 ମାତ୍ରା) ପ୍ରଥମାର୍ଦ୍ଧ ଲେଖି ପ୍ରଥମାର୍ଦ୍ଧର ନିୟମରେ (12+ 18= 30 ମାତ୍ରା) ଦ୍ୱିତୀୟାର୍ଦ୍ଧ ଲେଖିଲେ ତାହା ଉଦ୍ଗୀତି । ଏଥିରେ ମଧ ଷଷ୍ଠ ଗଣ ଜଗଣ ବା ପରିବର୍ତ୍ତେ ନଲୌ ବା (1111) ରଖା ଯାଇ ପାରିବ ।

ଆର୍ଯ୍ୟାଗୀତି

•• ଆର୍ଯ୍ୟାର ଉଭୟ ଅର୍ଦ୍ଧାଂଶର ମାତ୍ରା ବଢେଇ ଉଭୟର ବସୁଗଣ (4× 8= 32 ମାତ୍ରା) କଲେ ତାହା ଆର୍ଯ୍ୟାଗୀତି । ଏଥିରେ ମଧ ଷଷ୍ଠ ଗଣ ଜଗଣ ବା ପରିବର୍ତ୍ତେ ନଲୌ ବା (1111) ରଖାଯାଇ ପାରିବ, କିନ୍ତୁ ଜଗଣ ପରିବର୍ତ୍ତେ ଏକ ମାତ୍ର ଲଘୁ ବର୍ଣ୍ଣ ହେବ ନାହିଁ ।

ଆର୍ଯ୍ୟା ପରିବାରର 80 ଭେଦ

•• ମୂଳ ଆର୍ଯ୍ୟାର 16 ଭେଦ ପରି ଗୀତି ଉପଗୀତି ଉଦ୍ଗୀତି ଓ ଆର୍ଯ୍ୟାଗୀତି - ଏ ପ୍ରତ୍ୟେକର ମଧ 16ଟି ଲେଖାଏ (16× 4= 64ଟି) ଭେଦ ହେବ । ପୂର୍ବେ ମୂଳ ଆର୍ଯ୍ୟାର 16ଟି ଭେଦର ଚର୍ଚ୍ଚା ସରିଛି । ତେଣୁ ଆର୍ଯ୍ୟା ପରିବାରର ମୋଟ ଭେଦ 16+ 64= 80 ବା 16× 5= 80 । (ଚିତ୍ର - 6)

ବିଭିନ୍ନ ପ୍ରକାର ଆର୍ଯ୍ୟାର ଉଦାହରଣକବିତା ଚିତ୍ର - 8

ଛନ୍ଦୋବିଧାନରେ ଆର୍ଯ୍ୟା ପ୍ରଥମାର୍ଦ୍ଧ ଓ ଦ୍ୱିତୀୟାର୍ଦ୍ଧର ଗଣ ବିନ୍ୟାସ: 1, 2 & 3

ବିଭିନ୍ନ ପ୍ରକାର ଆର୍ଯ୍ୟାର ଉଦାହରଣ:-

ଉଦାହରଣ ଏକ:

================================

ଆର୍ଯ୍ୟାଛନ୍ଦ ନାହିଁ ପୁତ୍ର

================================

1 2-ଜ 3 4-ଜ 5 6-ଜ 7 ଗୁ

—--- —-- —- —-- —-- —-- —-

ବିତିଲା ତମିସ୍ର ରାମ୍ୟା | ପ୍ରଭାତ ଦେଖେ ପ୍ରସୂନ ତା ବୃନ୍ତେ ।

————————————————

1 2-ଜ 3 4 5 6-ଜ 7 ଗୁ

—---- —-- —--- —---- — —--- -

ନେତ୍ରଜ ଝରାଇ ନଗରେ | ସକଳେ ଖୋଜନ୍ତି ରାଜ-ସୁତେ ॥1

(ମୁଖଚପଳା ପଥ୍ୟା)

================================

1 2 3 4-ଜ 5 6-ଜ 7 ଗୁ

—---- —-- —- —-- —--- —--- —----

ସ୍ତବ୍ଧ ରଜା ଶୁଦ୍ଧୋଦନ ଅଧୀର ପାରିଷଦ ରାଜପୁରୁଷ ଭୟେ ।

————————————————

1 2-ଜ 3 4-ଜ 5 6-ଜ 7 ଗୁ

—---- —---- —-- —--- — —---- -

ସୁତ କାହିଁ କାହିଁ କାନ୍ଦେ ନୃପାଳ ପୀଡା ଭରା ହୃଦୟେ ॥ 2

(ଜଘନଚପଳାପଥ୍ୟା)

================================

2-ଜ 3 4-ଜ 5 6-ଜ 7 ଗୁ

——-- ——- ——- ——--- ——-- ——- ——---

ଯେ ପୁତ୍ର ଚାରି ଧାରେ ରହନ୍ତି କେତେ ସୁରମ୍ୟପରିଚାରୀ

————————————————

1 2-ଜ 3 4-ଜ 5 6-ଜ 7 ଗୁ

———-- ———-- ——- ————-- —— ----- -

ସେ ଆଜ ଯୋଗିବେଶେ ସତେ କି ଯାଇଅଛି ରାଗ କରି ||3

(ମହାଚପଳାପଥ୍ୟା)

================================

1 2-ଜ 3 / 4-ଜ 5 6-ଜ 7 ଗୁ

——-- ——-- ——-- ——-- ——--- ——--- ———----

ଦୂରେ ନିରଞ୍ଜନା ଜଳ-ଧାରେ ଗୌତମର ଚିତ୍ତ ଅତି ମୌନେ

————————————————

1 2-ଜ 3 4-ଜ 5 6-ଜ 7 ଗୁ

———--- ——-- —— ———---- ——-- ——--- -

ଭାଳେ ବିମୁକ୍ତି ପନ୍ଥା କି ଖୋଜି ସେ ଦେବ ବିଶ୍ୱଜନେ || 4

(ଜଘନଚପଳା-ଆଦିବିପୁଳା)

================================

ଲଲାଟେନ୍ଦୁ କବି 202305042100

================================

ସଂକ୍ଷେପରେ କହିଲେ ବିପୁଳା ଦୋଷ ନ ଥିବା ଆର୍ଯ୍ୟା ହେଲା ପଥ୍ୟାର୍ଯ୍ୟା ।

ଉଦାହରଣ ଦୁଇ:

ଆର୍ଯ୍ୟା ଛନ୍ଦେ କବିତା

ଶୁଣି ଯା ଲବଙ୍ଗ ଲତିକା

କେତେ ଦୂରେ ନିବା•ସ ତୁମ୍ଭର ଗୋ ।

ଆସ ଥ/ରେ ଝାଟି ଘରେ

ହସିଉଠୁ ମୋ କ୍ଷୁଦ୍ର ଅ•ନ୍ତର ଗୋ ||1||

ଚନ୍ଦ୍ରାନନାର ବଦନେ

ଚୁମ୍ବନ ଦେବା ବିଧେ•ୟ ନିଶ୍ଚୟ ଗୋ

ଯୌବନ ହସୁ ତୁମ ଲପନେ

ଖୁସିରେ କଟୁ ଆଜି ବେ•ଳଟି ଗୋ ||2||

ଆର୍ଯ୍ୟା ଛନ୍ଦେ କବିତା
ଲେଖିଲି ତୁମ ଲାଗି ଶେଷ ଉଦ୍ୟମରେ
ରାଗିବନି ଜମା ବନିତା
କବିତା ନ ହୁଏ ବିନା ଶ୍ରମରେ ॥3॥

## ମହାଚପଳା-ପଥ୍ୟାର୍ଯ୍ୟା

ସରିଲା କି ଛନ୍ଦ ଶିକ୍ଷା
କି ଲାଗି ଦୁଃଖିତ ଦିଶେ ମୁଖଟି ସଞ୍ଜେ ?
ଦେଲେ କି ଗାଳି ତୁମ ଗୁରୁ
ପଢା ଭଲେ କରି ନ ବୋଲି ଘରେ ? ॥1॥

ପଢ ପାଠ ଧୀର ମନରେ
ବୁଝି ବୁଝି ଅଗ୍ରସ ରହେବ ଶରଧାରେ ।
ପାଠକୁ ଭଲ ପାଇବ ଯେ
ସେ ଶୀଘ୍ର ବୁଝିବ ଭଲରେ ଦିନେ ॥2॥

ଲଲାଟେନ୍ଦୁ କବି 202307121717

---

ସରିଲା / କି ଛନ୍ଦ / ଶିକ୍ଷା
କି ଲାଗି / ଦୁଃଖିତ / ଦିଶେ ମୁ/ଖଟି ସ/ଞ୍ଜେ ?
ଦେଲେ / କି ଗାଳି / ତୁମ ଗୁରୁ
ପଢା ଭ/ଲେ କରି / ନ ବୋଲି /ଘ/ରେ ? ॥1॥

ପଢ ପା/ଠ ଧୀର / ମନରେ
ବୁଝି ବୁଝି / ଅଗ୍ରସ/ର ହେବ / ଶରଧା/ରେ ।
ପାଠକୁ / ଭଲ ପା/ଇବ ଯେ
ସେ ଶୀ/ଘ୍ର ବୁଝିବ /ଭ/ଲରେ ପ/ରେ ॥2॥

ମୁଖଚପଳା-ପଥ୍ୟାର୍ଯ୍ୟା (ପଦ-1)

କବିତା: ପଥ୍ୟାର୍ଯ୍ୟା ଓ ବିପୁଳାର୍ଯ୍ୟା:

ଆର୍ଯ୍ୟା ଉପସଂକ୍ଷେପ (Arya Summary):-

=====

ଆର୍ଯ୍ୟା ପରିବାରର ସଦସ୍ୟ:-

=====

ଆର୍ଯ୍ୟା

ଗୀତି

ଉପଗୀତି

ଉଦ୍ଗୀତି

ଆର୍ଯ୍ୟାଗୀତି

======

ପ୍ରତ୍ୟେକରେ

=======

ପଥ୍ୟା

ମୁଖବିପୁଳା

ଜଘନବିପୁଳା

ମହାବିପୁଳା

=======

ଉପରୋକ୍ତ ୪ ପ୍ରକାରରୁ

ପ୍ରତ୍ୟେକରେ :-

=======

ସାମାନ୍ୟ

ମୁଖଚପଳା

ଜଘନଚପଳା

ମହାଚପଳା

======

ଏହି ପରି ପ୍ରତ୍ୟେକ ଆର୍ଯ୍ୟାରେ 4× 4= 16 ଭେଦ

ଅର୍ଥାତ୍

====

ଆର୍ଯ୍ୟା 16 ପ୍ରକାର

ଗୀତି 16 ପ୍ରକାର

ଉପଗୀତି 16 ପ୍ରକାର

ଉଦ୍ଗୀତି 16 ପ୍ରକାର ଏବଂ

ଆର୍ଯ୍ୟାଗୀତି 16 ପ୍ରକାର

=======

ମୋଟ 16× 5= 80 ଆର୍ଯ୍ୟା ପରିବାରର ସଦସ୍ୟ ।

(ଇଂରାଜୀରେ କହନ୍ତେ Arya has eighty variants)

============

=====

ଆର୍ଯ୍ୟା ପରିବାରର ସଦସ୍ୟ:-

=====

ଆର୍ଯ୍ୟା

ଗୀତି

ଉପଗୀତି

ଉଦ୍ଗୀତି

ଆର୍ଯ୍ୟାଗୀତି

======

ପ୍ରତ୍ୟେକରେ

=======

ପଥ୍ୟା

ମୁଖବିପୁଳା

ଜଘନବିପୁଳା

ମହାବିପୁଳା

=======

ଉପରୋକ୍ତ ୪ ପ୍ରକାରରୁ

ପ୍ରତ୍ୟେକରେ :-

=======

ସାମାନ୍ୟ

ମୁଖଚପଳା

ଜଘନଚପଳା

ମହାଚପଳା

======

ଏହି ପରି ପ୍ରତ୍ୟେକ ଆର୍ଯ୍ୟାରେ 4× 4= 16 ଭେଦ

ଅର୍ଥାତ୍

====

ଆର୍ଯ୍ୟା 16 ପ୍ରକାର

ଗୀତି 16 ପ୍ରକାର

ଉପଗୀତି 16 ପ୍ରକାର

ଉଦ୍ଗୀତି 16 ପ୍ରକାର ଏବଂ

ଆର୍ଯ୍ୟାଗୀତି 16 ପ୍ରକାର

=======

ମୋଟ 16× 5= 80 ଆର୍ଯ୍ୟା ପରିବାରର ସଦସ୍ୟ ।

(ଇଂରାଜୀରେ କହନ୍ତେ Arya has eighty variants)

============

# ଚତୁର୍ଥ ଅଧ୍ୟାୟ: ବୈଦିକ ଛନ୍ଦ

ନିମ୍ନରେ ଦେଖିବେ ବୈଦିକ ଛନ୍ଦରେ କିପରି ଅକ୍ଷର ବିନ୍ୟାସର ନିୟମ ମାତ୍ର ଅଛି । ବର୍ଣ୍ଣଶୃଙ୍ଖଳା ନାହିଁ କି ମାତ୍ରାଶୃଙ୍ଖଳା ନାହିଁ । ଗଦ୍ୟକବିତାରେ ବି କିଛି ଶୃଙ୍ଖଳା ନ ଥାଏ । ଏଥିରେ ଗଦ୍ୟକବିତା ତୁଳନାରେ ନାମମାତ୍ର ଶୃଙ୍ଖଳା ଅଛି - ତାହା ହେଲା ଅକ୍ଷର ସଂଖ୍ୟା, ଅନ୍ୟ କିଛି ନାହିଁ । ବେଦ ସଭିଙ୍କ ଆଦରର ଅଧ୍ୟାତ୍ମବିଦ୍ୟା ର ଭଣ୍ଡାର ଓ ସମସ୍ତଙ୍କ ନମସ୍ୟ ଆଦିଗ୍ରନ୍ଥ । ତଥାପି ଏ ବୈଦିକ ଛନ୍ଦଗୁଡିକ ଲୋକସାହିତ୍ୟରେ ମୂଳରୁ ହିଁ ସଂପୂର୍ଣ୍ଣ ପରିତ୍ୟକ୍ତ । କାରଣ ଆପଣମାନେ ଚିନ୍ତା କରିବେ । ପ୍ରଥମେ ଅକ୍ଷରବିନ୍ୟାସ ଗୁଡିକ ଦେଖି ନିଅନ୍ତୁ ।

==========================

ବୈଦିକ ଛନ୍ଦଗୁଡିକ ଗଣ କି ମାତ୍ରାଧାରିତ ଥିବାର ଲକ୍ଷ କରା ଯାଏ ନାହିଁ । ଏଗୁଡିକ ଅକ୍ଷର ସଂଖ୍ୟାଧାରିତ । ଲୌକିକ ଛନ୍ଦସାହିତ୍ୟ ଯୁଗରେ ଏ ସବୁ ଆଦିମ ବିକାଶୋନ୍ମୁଖୀ (primitive and formative) ଛନ୍ଦ ଆଉ ଲେଖିବା ଆବଶ୍ୟକତା ରହିଲା ନାହିଁ । ସେତେ ବେଳେ ସୁବିକଶିତ ମାତ୍ରାଶୃଙ୍ଖଳାଧାରିତ ମାତ୍ରିକ ଛନ୍ଦ ଓ ବର୍ଣ୍ଣ ବା ଗଣ ଶୃଙ୍ଖଳାଧାରିତ ବାର୍ଣ୍ଣିକ ଛନ୍ଦ ବା ଗଣ ଛନ୍ଦ ହିଁ ଲେଖା ଚାଲିଲା । ତଥାପି ଶୈକ୍ଷିକ ମୂଲ୍ୟ (academic value) ଥିବାରୁ ସଂଗୃହୀତ ବୈଦିକ ଛନ୍ଦଭେଦ ସବୁ ନିମ୍ନରେ ପ୍ରଦତ୍ତ ହେଲା ।

======================

ପ୍ରଥମ ସପ୍ତକ:

===========

1- ଗାୟତ୍ରୀ: (24)

ପ୍ରମୁଖ ପରିଚୟ:

6+6+6+6 (ଚତୁଷ୍ପାଦ)

**त्रिपाद गायत्री8+8+8 24**

===========

ବୈଦିକ ସାହିତ୍ୟରେ ଭେଦ:

| | | |
|---|---|---|
| 1- ଅତିନିଚୃଦ୍ ଗାୟତ୍ରୀ | 6+6+7= | 19 |
| 2- ଅତିନିଚୃଦ୍ | 7+6+6= | 19 |
| 3- ପାଦନିଚୃଦ୍ | 7+7+7= | 21 |
| 4- ପାଦନିଚୃଦ୍ ବର୍ଦ୍ଧମାନା | 6+7+8= | 21 |
| 5- ବର୍ଦ୍ଧମାନା | 8+6+8= | 22 |
| 6- ଦ୍ୱିପଦା | 12+12= | 24 |
| 7- ଯବମଧ୍ୟା | 7+10+7= | 24 |
| 8- ଉଷ୍ଣିଗ୍‌ଗର୍ଭା | 6+7+11= | 24 |
| 9- ପଦପଙ୍କ୍ତି | 4+6+5+5+5= | 25 |
| 10- ଭୂରିକ୍ | 8+10+7= | 25 |

| | | |
|---|---|---|
| 11- ପାଦପଙ୍କ୍ତି | 5+5+5+5+6= | 26 |
| 12- ଭୂରିକ୍‌ପଦପଙ୍କ୍ତି | 5+5+5+6+6= | 27 |

-

| | | |
|---|---|---|
| ହ୍ରସୀୟସୀ | 6+6+7= | 19 |
| ଅତିନିଚୃତ୍-2 | 7+6+7= | 20 |
| ଅତିପାଦନିଚୃତ୍ | 6+8+7= | 21 |
| ନାଗୀ | 9+9+6= | 24 |
| ବାରାହୀ | 6+9+9= | 24 |
| ପଦପଙ୍କ୍ତି-2 | 5+5+5+4+6= | 25 |
| ପଦପଙ୍କ୍ତି-3 | 5+5+5+5+6= | 26 (21) |

2- ଉଷ୍ଣିକ୍ (28)

ପ୍ରମୁଖ ପରିଚୟ:

7+7+7+7 (ଚତୁଷ୍ପାଦ)

8+8+12

===========

ବୈଦିକ ସାହିତ୍ୟରେ ଭେଦ:

| | | |
|---|---|---|
| କକୁପ୍‌ନ୍ୟଙ୍କୁଶିରାନିଚୃଦୁଷ୍ଣିକ୍ | 11+12+4= | 27 |
| 2- ତନୁଶିରା | 11+11+6 = | 28 |
| 3- ପିପୀଲିକାମଧ୍ୟା | 11+6+11= | 28 |
| 4- ଅନୁଷ୍ଟୁବ୍‌ଗର୍ଭା | 5+8+8+8= | 29 |

-

| | | |
|---|---|---|
| କକୁଭ୍ | 8+12+8= | 28 |
| ପୁର | 12+8+8= | 28 (08) |

3- ଅନୁଷ୍ଟୁପ୍ (32)

ପ୍ରମୁଖ ପରିଚୟ:

8+8+8-8 (ଚତୁଷ୍ପାଦ)

===========

ବୈଦିକ ସାହିତ୍ୟରେ ଭେଦ:

| | | |
|---|---|---|
| 1- ବିରାଡ଼ନୁଷ୍ଟୁପ୍ | 10+10+10= | 30 |
| 2- କାବିରାଡ଼ନୁଷ୍ଟୁପ୍ | 9+9+12= | 30 |
| 3- ମହାପଦପଙ୍କ୍ତି | 5+5+5+5+6= | 31 |
| 4- ନଷ୍ଟରୂପା | 9+10+13= | 32 |

-

| | |
|---|---|
| ବିରାଟ୍ ଅନୁଷ୍ଟୁପ୍-2 | 10+10+10=30 |
| ତ୍ରିପାଦ୍ | 8+12+12= 32 |
| କୃତି | 12+12+8= 32 |
| ମଧ୍ୟେଜ୍ୟୋତି | 12+8+12= 32 |
| ବିରାଟ୍ ଅନୁଷ୍ଟୁପ୍-3 | 11+11+11=33 (10) |

4- ବୃହତୀ (36)
ପ୍ରମୁଖ ପରିଚୟ:
9+9+9+9
8+8+12+8
===========
ବୈଦିକ ସାହିତ୍ୟରେ ଭେଦ:

| | | |
|---|---|---|
| 1- ପିପୀଲିକାମଧ୍ୟାବୃହତୀ | 13+8+13= | 34 |
| 2- ବିଷ୍ଟାରବୃହତୀ | 8+10+10+8= | 36 |
| 3- ବିଷମପଦାବୃହତୀ | 9+8+11+8=36 | |
| - | | |
| ପଥ୍ୟା (/ସ୍କନ୍ଧୋଦ୍‌ଗ୍ରୀବ) | 8+8+12+8=36 | |
| ନ୍ୟଂକୁସାରିଣୀ | | |
| (/ଉରୋବୃହତୀ) | 8+12+8+8=36 | |
| ଉପରିଷ୍ଟାଦ୍ | 8+8+8+12=36 | |
| ପୁରସ୍ତାଦ୍ | 9+9+9+9= 36 | |
| ମହାବୃହତୀ | | |
| (/ସତୋବୃହତୀ) | | |
| (/ଊର୍ଦ୍ଧ୍ୱବୃହତୀ) | 10+10+8+8= | 36 (10) |

5- ପଙ୍କ୍ତି (40)
ପ୍ରମୁଖ ପରିଚୟ:
10+10+1010
===========
ବୈଦିକ ସାହିତ୍ୟରେ ଭେଦ:

| | | |
|---|---|---|
| 1- ବିରାଟ୍‌ପଙ୍କ୍ତି | 10+10+10+10= | 40 |
| ଅକ୍ଷର | 5+5 | 10 |
| ପଦ | 5+5+5+5+5= | 25 |
| ପଦ | 4+6+5+5+5= | 25 |
| ପ୍ରସ୍ତାର | 12+12+8+8= | 40 |
| ସତୋବୃହତୀ | | |

(/ସିଦ୍ଧାବିଷ୍ଟାର) 12+812+8= 40
ବିପରୀତା
ସତୋଳବିସ୍ତାର 8+12+8+12= 40
ଆସ୍ତାର 8+8+12+12= 40
ବିଷ୍ଟାର 8+12+12+8= 40
ସଂସ୍ତାର 12+8+8+12= 40 (10)

6- ତ୍ରିଷ୍ଟୁପ୍ (44)
ପ୍ରମୁଖ ପରିଚୟ:
11+11+11+11
===========
ବୈଦିକ ସାହିତ୍ୟରେ ଭେଦ:
ବିରାଟ୍ସ୍ଥାନା-1 10+10+9+8= 37
ବିରାଟ୍ସ୍ଥାନା-2 9+9+10+11= 39
ବିରାଡ୍ରୂପା 11+11+11+8= 41
ପୁରସ୍ତାଜ୍ଜ୍ୟୋତି 11+8+8+8+8= 43
ମଧ୍ୟେଜ୍ୟୋତି 8+8+11+8+8= 43
ଉପରିଷ୍ଟାଜ୍ଜ୍ୟୋତି 8+8+8+8+11= 43
ଅଭିସାରିଣୀ 10+10+12+12= 44
ମହାବୃହତୀ 8+8+8+8+12= 44
ଯବମଧ୍ୟା 8+8+12+8+8= 44
ଫଙ୍କ୍ତ୍ୟୁତ୍ତରା
(/ବିରାଟ୍ପୂର୍ବା) 10+10+8+8+8= 44 (11)

7- ଜଗତୀ (48)
ପ୍ରମୁଖ ପରିଚୟ:
12+12+12+12
===========
ବୈଦିକ ସାହିତ୍ୟରେ ଭେଦ:
1- ମହାପଙ୍କ୍ତି
ଜଗତୀ 8+8+8+8+8+8= 48
2- ମହାସତୀବୃହତୀ
ଜଗତୀ 8+8+8+12+12= 48
-
ମହାପଙ୍କ୍ତି
ଜଗତୀ-2 8+8+7+6+10+9= 48

ଜ୍ୟୋତିଷ୍ମତୀ 12+8+8+8+8= 44
ମହାସତୀବୃହତୀ
(/ପଞ୍ଚପଦାଜଗତୀ) 8+8+8+12+12=48
ବିଷ୍ଟାରପଙ୍କ୍ତି/ ପ୍ରବୃଦ୍ଧପଦା:
8+8+8+12+12+8+8+8=72 (07)
======================

==========================
ଦ୍ୱିତୀୟ ସପ୍ତକ:
===========
8- ଅତିଜଗତୀ (52)
ପ୍ରମୁଖ ପରିଚୟ:
13+13+13+13
===========
ବୈଦିକ ସାହିତ୍ୟରେ ଭେଦ:
1- ଅତିଜଗତୀ 12+12+12+8+8= 52 (02)

9- ଶକ୍ୱରୀ (56)
ପ୍ରମୁଖ ପରିଚୟ:
14+14+14+14
===========
ବୈଦିକ ସାହିତ୍ୟରେ ଭେଦ:
1- ଶକ୍ୱରୀ 8+8+8+8+8+8+8= 56 (02)

10- ଅତିଶକ୍ୱରୀ (60)
ପ୍ରମୁଖ ପରିଚୟ:
15+15+15+15
===========
ବୈଦିକ ସାହିତ୍ୟରେ ଭେଦ:
1- ଅତିଶକ୍ୱରୀ 16+16+12+8+8= 60 (02)

11- ଅଷ୍ଟି (64)
ପ୍ରମୁଖ ପରିଚୟ:
16+16+16+16
===========
ବୈଦିକ ସାହିତ୍ୟରେ ଭେଦ:
1- ଅଷ୍ଟି 16+16+16+8+8= 64 (02)

12- ଅତ୍ୟଷ୍ଟି (68)
ପ୍ରମୁଖ ପରିଚୟ:
17+17+17+17
===========
ବୈଦିକ ସାହିତ୍ୟରେ ଭେଦ:
1- ଅତ୍ୟଷ୍ଟି
12+12+8+8+8+12+8= 68 (02)

13- ଧୃତି (72)
ପ୍ରମୁଖ ପରିଚୟ:
18+18+18+18
===========
ବୈଦିକ ସାହିତ୍ୟରେ ଭେଦ:
1- ଧୃତି 12+12+8+8+8+16+8= 72 (02)

14- ଅତିଧୃତି (76)
ପ୍ରମୁଖ ପରିଚୟ:
19+19+19+19
===========
ବୈଦିକ ସାହିତ୍ୟରେ ଭେଦ:
1- ଅତିଧୃତି
12+12+8+8+8+12+8+8= 76 (02)
======================

==========================
ତୃତୀୟ ସପ୍ତକ:
===========
(15-21)
15- କୃତି 20×4 16- ପ୍ରକୃତି 21×4
17- ଆକୃତି 22×4 18- ବିକୃତି 23×4
19- ସଂକୃତି 24×4 20- ଅଭିକୃତି 25×4
21- ଉତ୍କୃତି 26×4
====================== (07)
==========================
==========================

ବୈଦିକ ଛନ୍ଦରୁ ଦତ୍ତ ମୋଟ ଭେଦ : (098)

# ପଞ୍ଚମ ଅଧ୍ୟାୟ: ଛନ୍ଦଗୁଡ଼ିକର ପ୍ରସ୍ତାର

## ଛନ୍ଦ ପ୍ରସ୍ତାର (SPREAD SHEET)

### ନଷ୍ଟବିଧି ଓ ଉଦ୍ଦିଷ୍ଟବିଧି - ବାର୍ଣ୍ଣିକ ଛନ୍ଦପ୍ରସ୍ତାରେ ସ୍ଥାନନିର୍ଣ୍ଣୟ

ଛନ୍ଦ ପ୍ରସ୍ତାର କଣ? ଏହା ଜାଣିବା ପୂର୍ବରୁ ଚିନ୍ତା କରିବା କେତେ ବର୍ଣ୍ଣର ବାର୍ଣ୍ଣିକ ଛନ୍ଦ ଓ କେତେ ମାତ୍ରାର ମାତ୍ରିକ ଛନ୍ଦ ମୋଟରେ ଅଛି କେତେ ।

ପ୍ରଥମେ ବାର୍ଣ୍ଣିକ ଛନ୍ଦ:

ପ୍ରଶ୍ନ: ଯଦି ଗୋଟିଏ ଛନ୍ଦର ପ୍ରତି ପାଦରେ ଗୋଟିଏ ମାତ୍ର ବର୍ଣ୍ଣ ରହେ ତେବେ କେତେଟା ଛନ୍ଦ ସମ୍ଭବ? ଉତ୍ତର: ଦୁଇଟି ସମ୍ଭବ । ପ୍ର: ସେ ଦୁଇଟିର ଲକ୍ଷଣ କଣ? ଉ: ଗୋଟିଏ ହେବ s ବା ଗୁରୁ ବର୍ଣ୍ଣ, ଅନ୍ୟଟି i ବା ଲଘୁ ବର୍ଣ୍ଣର ଛନ୍ଦ ହେବ । ପୁଣି ପ୍ରଶ୍ନ: ଯଦି ପ୍ରତି ପାଦରେ 2ଟି ଲେଖା ବର୍ଣ୍ଣ ଥାଏ ତେବେ? ଉ: ତେବେ ଚିରିଟି ହେବ ଯଥା ss, is, si ଓ ii . ପ୍ର; ସେହି ପରି, ପ୍ରତି ପାଦରେ 3ଟି ଲେଖା ବର୍ଣ୍ଣ ଥିଲେ କେତେ ପ୍ରକାର ବର୍ଣ୍ଣବିନ୍ୟାସ ବା ଛନ୍ଦ ହେଇ ପାରିବ? ଉ: ଆଠ ପ୍ରକାର ହେବ ଯଥା sss, iss, sis,  iis, ssi, isi, sii ଓ iii . ଏହି 8ଟି ବର୍ଣ୍ଣବିନ୍ୟାସକୁ 8ଟି ଗଣ ବୋଲି ମଧ ଛନ୍ଦଃଶାସ୍ତ୍ରରେ ନାମ ଦିଆ ଯାଇଛି । ପ୍ର; ପୁଣି କହନ୍ତୁ ପ୍ରତି ପାଦରେ 4ଟି ଲେଖା ବର୍ଣ୍ଣ ରହିଲେ କେତେ ପ୍ରକାର ବର୍ଣ୍ଣବିନ୍ୟାସ ବା ଛନ୍ଦ ହେଇ ପାରିବ? ଉ: 16 ପ୍ରକାର ହେବ ଯଥା ssss, isss, siss, iiss, ssis, isis, siis, iiis, sssi, issi, sisi, iisi, ssii, isii, siii ଓ iiii  ।

ନିରୀକ୍ଷା:
ଉପରେ ଦେଖା ଗଲା ଯେ
1 ବର୍ଣ୍ଣବିଶିଷ୍ଟ ଛନ୍ଦ ସଂଖ୍ୟା 2 ବା 2^1 (2 to the power 1)
2 ବର୍ଣ୍ଣବିଶିଷ୍ଟ ଛନ୍ଦ ସଂଖ୍ୟା 4 ବା 2^2
3 ବର୍ଣ୍ଣବିଶିଷ୍ଟ ଛନ୍ଦ ସଂଖ୍ୟା 8 ବା 2^3
4 ବର୍ଣ୍ଣବିଶିଷ୍ଟ ଛନ୍ଦ ସଂଖ୍ୟା 16 ବା 2^4 ଓ ଏହି ପରି ଏ ସଂଖ୍ୟା ଦୁଇ ଦୁଇ ଗୁଣ ହେଇ ବଢି ବଢି ଯିବ । ଉଦାହରଣ ସ୍ୱରୂପ 10 ବର୍ଣ୍ଣବିଶିଷ୍ଟ ଛନ୍ଦ ସଂଖ୍ୟା ମୋଟ 2^10= 1024ଟି, 20 ବର୍ଣ୍ଣବିଶିଷ୍ଟ ଛନ୍ଦ ସଂଖ୍ୟା ମୋଟ 2^20= 1,048,576ଟି, 25 ବର୍ଣ୍ଣବିଶିଷ୍ଟ ଛନ୍ଦ ସଂଖ୍ୟା ମୋଟ 2^25= 33,554,432ଟି ଓ 50 ବର୍ଣ୍ଣବିଶିଷ୍ଟ ଛନ୍ଦ ସଂଖ୍ୟା ମୋଟ 1,125,899,906,842,624ଟି ବାର୍ଣିକ ଛନ୍ଦ ଏହି ସମଗ୍ର ବ୍ରହ୍ମାଣ୍ଡରେ ଉପଲବ୍ଧ ଅଛି ଇତ୍ୟାଦି । ଏଗୁଡ଼ିକୁ ସାରଣୀ କଲେ ନିମ୍ନମତେ ହେବ ।

| ବର୍ଣ୍ଣ ସଂଖ୍ୟା | ଛନ୍ଦ ସଂଖ୍ୟା | | ନିରୀକ୍ଷା |
|---|---|---|---|
| 01 | 002 | = | 2^1 (2 to the power 1) |
| 02 | 004 | = | 2^2 (2 to the power 2) |
| 03 | 008 | = | 2^3 (2 to the power 3) |
| 04 | 016 | = | 2^4 (2 to the power 4) |
| 05 | 032 | = | 2^5 (2 to the power 5) |
| 06 | 064 | = | 2^6 (2 to the power 6) |
| 07 | 128 | = | 2^7 (2 to the power 7) |

| 08 | 256 | = | 2^8 (2 to the power 6) |
|---|---|---|---|
| 09 | 1024 | = | 2^9 (2 to the power 6) |

ଇତ୍ୟାଦି । ଏହି ସାରଣୀକୁ ଯେତେ ବଢେଇଲେ ପ୍ରତି ନୂଆ ଧାଡିରେ ଛନ୍ଦ ସଂଖ୍ୟା ପୂର୍ବ ସଂଖ୍ୟାର ଦୁଇ ଗୁଣ ହେଉଥିବ ।

**ଏବେ ମାତ୍ରିକ ଛନ୍ଦ;**

ଯଦି କୌଣସି ଏକ କବିତାପାଦରେ ଗୋଟିଏ ମାତ୍ରା ରଖା ଯାଏ ତେବେ ସେହି ପାଦରେ ମାତ୍ର ୧ ପ୍ରକାର ମାତ୍ରାବିନ୍ୟାସ ହେଇ ପାରିବ, ତାହା ହେଲା i; 2 ମାତ୍ରା ନେଲେ 2 ପ୍ରକାର, s ଓ ii; 3 ମାତ୍ରା ନେଲେ is si ଓ iii - ଏହି 3 ପ୍ରକାର ସମ୍ଭବ ହେବ । ଯଦି ଧାଡ଼ିକୁ 4 ମାତ୍ରା ଲେଖିବା ତେବେ ବର୍ଣ୍ଣ ବିନ୍ୟାସ ss iis isi sii ଓ iiii - ଏ 5 ପ୍ରକାର ହେବ, 5 ମାତ୍ରା ନେଲେ iss sis iiis ssi iisi isii siii ଓ iiiii - ଏହି 8 ପ୍ରକାର ହେଇ ପାରିବ । ପୁଣି 6 ମାତ୍ରା ନେଲେ ସମ୍ଭାବନା ହେବ 13 ପ୍ରକାର । ଏଗୁଡିକୁ ସାରଣୀ କଲେ ନିମ୍ନମତେ ହେବ ।

| ମାତ୍ରା ସଂଖ୍ୟା | ମାତ୍ରାବିନ୍ୟାସ ଭେଦ | ନିରୀକ୍ଷା |
|---|---|---|
| 0 | 0 | |
| 1 | 1 | |
| 2 | 2 | =1+ 0 |
| 3 | 3 | =2+ 1 |
| 4 | 5 | =3+ 2 |
| 5 | 8 | =5+ 3 |
| 6 | 13 | =8+ 5 |
| 7 | 21 | =13+ 8 |
| 8 | 34 | =21+ 13 |
| 9 | 55 | =34+ 21 |
| 10 | 89 | =55+ 34 |
| 11 | 144 | =89+ 55 |
| 12 | 233 | =144+ 89 |
| 13 | 377 | =233+ 144 |
| 14 | 610 | =377+ 233 |
| 15 | 987 | =610+ 377 |

ଅର୍ଥାତ୍ ମାତ୍ରା ସଂଖ୍ୟା ଗୋଟିଏ ବଢି x ହେଲେ ସେଥିରେ ମାତ୍ରାବିନ୍ୟାସର ଭେଦ ହେବ (x-1)ଟି ମାତ୍ରାରେ ଯେତିକି ବିନ୍ୟାସ ଅଛି ଏବଂ (x-2)ଟି ମାତ୍ରାରେ ଯେତିକି ବିନ୍ୟାସ ଅଛି, ସେ ଦୁଇ ସଂଖ୍ୟାର ଯୋଗଫଳ । ଏହି କ୍ରମରେ ଯୋଗ କରି କରି ଗଲେ ଜଣା ପଡିବ 25 ମାତ୍ରାର ଧାଡିରେ ବିନ୍ୟାସ ବା ଛନ୍ଦ ସଂଖ୍ୟା 121,933ଟି ଓ 50 ମାତ୍ରାର ପାଦରେ ସମ୍ଭାବିଣ ବିନ୍ୟାସ 20,365,011,074 ଟି ।

ଏତେ ବଡ ବଡ ନାକ୍ଷତ୍ରିକ ରାଶିର (consisting of astronomical figures) ବିଶିଷ୍ଟ ଛନ୍ଦଃସାରଣୀରେ କେଉଁ ଛନ୍ଦର ସ୍ଥିତି କେଉଁଠି, ସେ ସବୁକୁ ପାଇବା ଓ ଅନନ୍ୟୀକୃତ (identify) କରିବା ବା ଚିହ୍ନିବା କି ପରି? ସେଥି ପାଇଁ ଛନ୍ଦଃଶାସ୍ତ୍ର ଯେଉଁ ସାରଣୀର ବା table/ spreadsheetର ବ୍ୟବସ୍ଥା କରିଛନ୍ତି ସେହି ସାରଣୀର ନାମ ଛନ୍ଦୋପ୍ରସ୍ତାର । ବାର୍ଣ୍ଣିକ ଛନ୍ଦରେ ଭିନ୍ନ ଭିନ୍ନ ସଂଖ୍ୟକ ବର୍ଣ୍ଣର ପାଦ ପାଇଁ ଓ ମାତ୍ରିକ ଛନ୍ଦରେ ବିଭିନ୍ନ ସଂଖ୍ୟକ ମାତ୍ରାର ପାଦ ପାଇଁ ବିଭିନ୍ନ ପ୍ରସ୍ତାର ବା spreadsheet ବ୍ୟବସ୍ଥା ଅଛି ।

ଏବେ ବୁଝିବା ସେହି ପ୍ରସ୍ତାର ନିର୍ମାଣ ଓ ସେଥିରେ ବିଭିନ୍ନ ବର୍ଣ୍ଣ ଓ ବିଭିନ୍ନ ମାତ୍ରାର ବିନ୍ୟାସ ସମୂହକୁ ସ୍ଥାନ ଦେବା ଓ ଆବଶ୍ୟକ ସ୍ଥଳେ ସେ ସ୍ଥାନରୁ ପାଇବାର ପଦ୍ଧତି ।

ବିର୍ଣ୍ଣକ ଛନ୍ଦ ପ୍ରସ୍ତାର: ନଷ୍ଟ ବିଧି ଓ ଉଦ୍ଦିଷ୍ଟ ବିଧି:

ବାର୍ଣ୍ଣିକ ଛନ୍ଦ ପ୍ରସ୍ତାରରେ ଏକ ଏକ ଅନନ୍ୟ ସଂଖ୍ୟା (unique number) ବଳରେ ଛନ୍ଦର ପଦରେ କେଉଁଠି କେଉଁଠି ଲଘୁ ବର୍ଣ୍ଣ ଅଛି ସୂଚେଇ ଦିଆ ଯାଏ । ଅବଶିଷ୍ଟ ସ୍ଥାନରେ ଗୁରୁବର୍ଣ୍ଣ ବୋଲି ବୁଝିବାକୁ ପଡିବ । ଏହି ଅନନ୍ୟ ସଂଖ୍ୟାରୁ ଛନ୍ଦର ଲଘୁବର୍ଣ୍ଣର ସ୍ଥାନ ନିରୂପଣର ନାମ ନଷ୍ଟ ବିଧି - ଇଂରାଜୀରେ deciphering କହି ହେବ । ଏହା ବିବରୀତ ଏହି ଅନନ୍ଯ ସଂଖ୍ୟାକୁ କଷି କାଢିବା ପ୍ରକ୍ରିୟାର ନାମ ଉଦ୍ଦିଷ୍ଟ ବିଧି (cypgering) ।

## ବାର୍ଣ୍ଣିକ ପ୍ରସ୍ତାରର ନଷ୍ଟ ବିଧି:

**ବାର୍ଣ୍ଣିକ ଛନ୍ଦ ଗୋପନିକା ସାରଣୀ**

**Cipher Table for varnika chhandas**

| ସ୍ଥାନ (ବାମରୁ) | | ବର୍ଣ୍ଣଚୟର ସ୍ଥାନୀୟ ମାନ (ବାମରୁ) |
|---|---|---|
| === | | ======= |
| 01 | 2^00 | 00,000,001 |
| 02 | 2^01 | 00,000,002 |
| 03 | 2^02 | 00,000,004 |
| 04 | 2^03 | 00,000,008 |
| 05 | 2^04 | 00,000,016 |
| 06 | 2^05 | 00,000,032 |
| 07 | 2^06 | 00,000,064 |
| 08 | 2^07 | 00,000,128 |
| 09 | 2^08 | 00,000,256 |
| 10 | 2^09 | 00,000,512 |
| 11 | 2^10 | 00,001,024 |
| 12 | 2^11 | 00,002,048 |
| 13 | 2^12 | 00,004,096 |
| 14 | 2^13 | 00,008,192 |
| 15 | 2^14 | 00,016,384 |
| 16 | 2^15 | 00,032,768 |
| 17 | 2^16 | 00,065,536 |
| 18 | 2^17 | 00,131,072 |
| 19 | 2^18 | 00,262,144 |
| 20 | 2^19 | 00,524,288 |
| 21 | 2^20 | 01,048,576 |
| 22 | 2^21 | 02,097,152 |
| 23 | 2^22 | 04,194,304 |
| 24 | 2^23 | 08,388,608 |
| 25 | 2^24 | 16,777,216 |
| 26 | 2^25 | 33,554,432 |
| 27 | 2^26 | 67,108,864 |

=====================

**ଉପରୋକ୍ତ ସାରଣୀର ସଂରକ୍ଷଣ ଆବଶ୍ୟକ ।**

## ବାର୍ଣ୍ଣିକ ଛନ୍ଦ ନଷ୍ଟ ବିଧି (deciphering):

### ପ୍ରସ୍ତାର ସଂଖ୍ୟା/ ଗୋପନିକା ସଂଖ୍ୟାରୁ ଛନ୍ଦର ସ୍ୱରୂପ ନିର୍ଣ୍ଣୟର ନାମ  ନଷ୍ଟ ବିଧି, deciphering:

ଆସନ୍ତୁ ଦେଖିବା ବାର୍ଣ୍ଣିକ ଛନ୍ଦରେ ପ୍ରସ୍ତାର ସଂଖ୍ୟା ବା ଗୋପନିକାରୁ ସ୍ୱରବର୍ଣ ଶୃଙ୍ଖଳା ନିର୍ଣ୍ଣୟର ଏକ ଉଦାହରଣ:

ଏକ ଛନ୍ଦରେ 11ଟି ଅକ୍ଷର ଅଛି ଓ ଏହାର ପ୍ରସ୍ତାରରେ ସ୍ଥାନ 487 । ଏହି କଥାକୁ 11/487 ଲେଖା ଯାଏ ।

ପ୍ରଥମେ 487ରୁ 1 ବିୟୋଗ ହେବ ଓ ଶେଷ ରହିଯିବ 486 । ଏବେ ପ୍ରଶ୍ନ: ଏହି ସଂଖ୍ୟା 486 ଆମ ଗୋପନିକା ସାରଣୀସ୍ଥ କେଉଁ କେଉଁ ସଂଖ୍ୟାର ଯୋଗଫଳ ? (*କୌଣସି ସଂଖ୍ୟା ଥରେରୁ ଅଧିକ ନେବା ମନା /*) ଉତ୍ତର: 486 ହେଲା 256+ 128+ 64+ 32+ 4+ 2 । ପରବର୍ତ୍ତୀ ପ୍ରଶ୍ନ: 486 ର ଏହି ସଂଘଟକ ସଂଖ୍ୟାଗୁଡିକ ଗୋପନିକା ସାରଣୀର କେଉଁ କେଉଁ ସ୍ଥାନରେ ଅଛନ୍ତି? ଉତ୍ତର: ଏ ଗୁଡିକର ସ୍ଥାନ ହେଲା ଛୋଟରୁ ବଡ କ୍ରମେ 2, 3, 6, 7, 8, 9 ! ତେବେ ଛନ୍ଦଟିର 11ଟି ବର୍ଣ୍ଣ ଭିତରୁ 2, , 6, 7, 8, 9 ସ୍ଥାନରେ ଲଘୁ ବର୍ଣ୍ଣ ଅଛି ଓ ଅନ୍ୟ ସବୁ ବର୍ଣ୍ଣ । କାରଣ ପ୍ରସ୍ତାର ଗୋପନିକାରେ କେବଳ ଲଘୁବର୍ଣ୍ଣର ସ୍ଥାନ ସୂଚେଇ ଦିଆ ଯାଇଥାଏ; ଅବଶିଷ୍ଟ ବର୍ଣ୍ଣ ଗୁରୁ । ଅତଃ ଏବ 11/487 ଛନ୍ଦର ବର୍ଣ୍ଣକ୍ରମ ହେଲା:

LSS / LLS / SSS / LL ବା
211 / 221 / 111 / 22 ବା
ଗୁଲଲ / ଗୁଗୁଲ / ଲଲଲ / ଗୁଗୁ ବା
ଭଗଣ ତଗଣ ନଗଣ ଗୁଗୁ ।

ଏହି ଛନ୍ଦର ନାମ ଅନୁକୂଳା (ନାମାନ୍ତରେ ମୌକ୍ତିକଦାମା) ।

## ବାର୍ଣ୍ଣିକ ଉଦ୍ଦିଷ୍ଟ ବିଧି, ciphering:

ଛନ୍ଦ ସ୍ୱରୂପରୁ ଏହାର ପ୍ରସ୍ତାରେ ସ୍ଥାନାଙ୍କ ବା ସାଂଖ୍ୟିକ ଗୋପନିକା ନିର୍ମାଣର ନାମ  ଉଦ୍ଦିଷ୍ଟ ବିଧି, ciphering

ମନେ କରନ୍ତୁ ଇନ୍ଦ୍ରବଜ୍ରାର ଗୋପନିକା କଷିବେ । ଏ କ୍ଷେତ୍ରରେ ପ୍ରଥମ ପ୍ରଶ୍ନ - ଇନ୍ଦ୍ରବଜ୍ରାର କେଉଁ କେଉଁ ସ୍ଥାନରେ ଲଘୁ ବର୍ଣ୍ଣ ଥାଏ? ଉତ୍ତର - ଇନ୍ଦ୍ରବଜ୍ରା ହେଲା 221/221/121+22 ଆର୍ଥାତ୍ ଏହାର ବର୍ଣ୍ଣ 3, 6, 7 ଓ 9 ଲଘୁବର୍ଣ୍ଣ । ପୁଣି ପ୍ରଶ୍ନ - ଗୋପନିକା ସାରଣୀରେ ଏହି ସ୍ଥାନ ଗୁଡିକରେ ମୂଲ୍ୟ ଏକତ୍ର ମିଶାନ୍ତୁ ଓ ଯୋଗଫଳରେ 1 ମିଶାନ୍ତୁ । କେତେ ହେଲା  ? ଉତ୍ତର - ଏହି ଯୋଗଫଳ ହେଲା (4+32+64+256)+ 1 = 356+ 1= 357 । ସ୍ମରଣୀୟ ଯେ ଏହି 11/357 ହିଁ ପ୍ରସ୍ତାରରେ ଇନ୍ଦ୍ରବଜ୍ରାର ସ୍ଥାନ ବା ଆଧୁନିକ ଭାଷାରେ ଇନ୍ଦ୍ରବଜ୍ରାର unid ବା unique numerical id (identification).

ଯଦି ପ୍ରସ୍ତାରର ସାରଣୀ କରିବା ଉଦିହରଣ ନିଅନ୍ତୁ । ଯଦି ଚାରିଟ ବର୍ଣ୍ଣର ବିନ୍ୟାସ ପାଇଁ ସାୟଣୀ କରିବ ତ ନିମ୍ନ ଚିତ୍ର ଟରି ହେବ ।

ମାତ୍ରିକ ଛନ୍ଦରେ ପ୍ରସ୍ତାର ଗୋପନିକାରେ ଲଘୁ ବର୍ଣ୍ଣଗୁଡିକର ସ୍ଥାନୀୟ ମାନ ପୂର୍ବସ୍ଥ ଦୁଇଟି ସ୍ଥାନୀୟ ମାନର ଯୋଗଫଳ । ଯଥା;

**ମାତ୍ରିକ ଛନ୍ଦ ଗୋପନିକା ସାରଣୀ**

**Cipher Table for matrika chhandas**

| ସ୍ଥାନ (ବାମରୁ) | | | ବର୍ଣ୍ଣଚୟର ସ୍ଥାନୀୟ ମାନ (ବାମରୁ) |
|---|---|---|---|
| 1 | - | - | 1 |
| 2 | - | - | 2 |
| 3 | - | - | 3 |
| 4 | - | - | 5 |
| 5 | - | - | 8 |
| 6 | - | - | 13 |
| 7 | - | - | 21 |
| 8 | - | - | 34 |
| 9 | - | - | 89 |
| 10 | - | - | 144 |
| 11 | - | - | 233 ଇତ୍ୟାଦି । |

=====================

**ଉପରୋକ୍ତ ସାରଣୀର ସଂରକ୍ଷଣ ଆବଶ୍ୟକ ।**

=====================

ଚାରି ବର୍ଣ୍ଣର ପ୍ରସ୍ତାର:

| | | | | |
|---|---|---|---|---|
| 1 | S | S | S | S |
| 2 | I | S | S | S |
| 3 | S | I | S | S |
| 4 | I | I | S | S |
| 5 | S | S | I | S |
| 6 | I | S | I | S |
| 7 | S | I | I | S |
| 8 | I | I | I | S |
| 9 | S | S | S | 1 |
| 10 | I | S | S | I |
| 11 | S | I | S | I |
| 12 | I | I | S | I |
| 13 | S | S | I | I |
| 14 | I | S | I | I |
| 15 | S | I | I | I |
| 16 | I | I | I | I |

ପାଞ୍ଚ ବର୍ଣ୍ଣର ପ୍ରସ୍ତାର:

5 ବର୍ଣ୍ଣର ପ୍ରସ୍ତାର

| | | | | | |
|---|---|---|---|---|---|
| S | S | S | S | S | 01 |
| I | S | S | S | S | 02 |
| S | I | S | S | S | 03 |
| I | I | S | S | S | 04 |
| S | S | I | S | S | 05 |
| I | S | I | S | S | 06 |
| S | I | I | S | S | 07 |
| I | I | I | S | S | 08 |
| S | S | S | I | S | 09 |
| I | S | S | I | S | 10 |
| S | I | S | I | S | 11 |
| I | I | S | I | S | 12 |
| S | S | I | I | S | 13 |
| I | S | I | I | S | 14 |
| S | I | I | I | S | 15 |
| I | I | I | I | S | 16 |
| S | S | S | S | I | 17 |
| I | S | S | S | I | 18 |
| S | I | S | S | I | 19 |
| I | I | S | S | I | 20 |
| S | S | I | S | I | 21 |
| I | S | I | S | I | 22 |
| S | I | I | S | I | 23 |
| I | I | I | S | I | 24 |
| S | S | S | I | I | 25 |
| I | S | S | I | I | 26 |
| S | I | S | I | I | 27 |
| I | I | S | I | I | 28 |
| S | S | I | I | I | 29 |
| I | S | I | I | I | 30 |
| S | I | I | I | I | 31 |
| I | I | I | I | I | 32 |

ଏଥିରେ ପ୍ରଥମ ଧାଡିରେ ଚାରିଟି ଗୁରୁ ବର୍ଣ୍ଣ ବା ସର୍ବଗୁରୁ ବିନ୍ୟାସ ନେବା । ତାପର ଧାଡି ଲେଖିଲା ବେଳେ ଉପର ଧାଡିର ବାମ ପଟୁ ଯେଉଁଠି ପ୍ରଥମ ଗୁରୁ ମିଳିବ ତା ତଳେ ଲଘୁ ଲେଖି ତା ଡାହାଣକୁ ଲଘୁ ତଳେ ଲଘୁ ଓ ଗୁରୁ ତଳେ ଗୁରୁ ଲେଖିବା । କିନ୍ତୁ ବାମ ପଟେ ଓଲଟା ଲଘୁ ଥିଲେ ତା ତଳେ ଗୁରୁ ଓ ଗୁରୁ ଥିଲେ ତା ତଳେ ଲଘୁ ଲେଖିବା । ତୃତୀୟ ଧାଡି ଲେଖିଲା ବେଳେ ସେହି ପରି ଦ୍ୱିତୀୟ ଧାଡିକୁ ଦେଖି ଦେଖି ସେହି ନିୟମରେ ଲେଖିବା । ଏହି ପରି ପ୍ରତି ଧାଡିରେ ଚାରି ଚାରି ବର୍ଣ୍ଣର ବିନ୍ୟାସ ସେ ପର୍ଯ୍ୟନ୍ତ ଲେଖି ଚିଲିବା ଯେ ପର୍ଯ୍ଯନ୍ତ ଏହା IIII ବା ସର୍ବଲଘୁ ନ ହେଇଛି ।. ***ଏହିପରି ଯେ କୌଣସି ସଂଖ୍ୟକ ବର୍ଣ୍ଣବିନ୍ୟାସର ପ୍ରସ୍ତାର କହା ଯାଏ ।***

**ବାର୍ଣ୍ଣିକ ଛନ୍ଦରେ ପ୍ରଶ୍ନୋତ୍ତର**

ଏବେ ମନେ କରନ୍ତୁ ପ୍ରଶ୍ନ ହେଲା - ଚାରି ବର୍ଣ୍ଣର ପ୍ରସ୍ତାରରେ **SISI** ର ଅନନ୍ୟ ଅଙ୍କ ବା unique identification number କେତେ? ଏଥିରେ ଦେଖନ୍ତୁ ବାମରୁ ୧ରେ ଓ ୩ରେ ଗୁରୁ ଅଛି । ଆମ ବାର୍ଣ୍ଣିକ ଗୋପନିକା ସାରଣୀ ବା cipher table ରେ ୧ ଓ ୩ ର ସ୍ଥାନୀୟ ମାନ 1 ଓ 4 ଏବଂ ଉଭୟର ଯୋଗଫଳ 5; ତେଣୁ ଚାରିବର୍ଣ୍ଣକୁ ନେଇ ଯେଉଁ 16 ଟି ବିନ୍ୟାସ ବା ଛନ୍ଦ ହୁଏ ସେଥିରୁ 5 ବିୟୋଗ କରିବେ । ଫଳ ହେବ 16- 5= 11, ଅତଃ, 4 ବର୍ଣ୍ଣର ପ୍ରସ୍ତାରରେ SISI ର ସ୍ଥାନ 11 ଅର୍ଥାତ୍ ପ୍ରସ୍ତାରରେ ଏହାର UID (unique Id no.) ହେଲା 4/11.

ପ୍ରଶ୍ନ ଏ ପରି ଉଠି ପାରେ - ଚାରି ବର୍ଣ୍ଣର ପ୍ରସ୍ତାରରେ ଯେଉଁ ଛନ୍ଦର ସ୍ଥାନ 5 ରେ ଅର୍ଥାତ୍ 4/5 ଅନନ୍ୟ ଅଙ୍କ ଥିବା ଛନ୍ଦର ବର୍ଣ୍ଣ ବିନ୍ୟାସ କଣ? ତାକୁ ଏହି ପରି କଷି ଉତ୍ତର କାଢିବେ । ପ୍ରଥମେ ମୋଟ 16 ରୁ ପାଞ୍ଚ ବିୟୋଗ କରିବେ, ରହିବ 11; ଏହି 11 ଆମ ଗୋପନିକା ସାରଣୀର କେଉଁ ସବୁ ସଂଖ୍ୟର ଯୋଗ ଫଳ? ଏହା 1, 2 ଓ 8 ର ଯୋଗଫଳ । ଆମ ବାର୍ଣ୍ଣିକ ଗୋପନିକାରେ ଏହି 1 2 ଓ 4 ର ସ୍ଥାନ ପ୍ରଥମ ଦ୍ୱିତୀୟ ଓ ଚତୁର୍ଥ, ତେଣୁ ସେହି ସେହି ସ୍ଥାନରେ ଗୁରୁ ବର୍ଣ୍ଣ ହେବ, ଅବବଶିଷ୍ଟ ଲଘୁ । ଅତଏବ ଛନ୍ଦଟି SSIS.

**ମାତ୍ରିକ ଛନ୍ଦ ପ୍ରସ୍ତାର ନିର୍ମାଣ ଉପାୟ କିଛିଟା ଭିନ୍ନ । ତାହା ନିମ୍ନ ମତେ ହୁଏ ।**

ଚାରି ମାତ୍ରା ବିନ୍ୟାସର ପ୍ରସ୍ତାର:

| | | | | |
|---|---|---|---|---|
| 1 | | | S | S |
| 2 | | I | I | S |
| 3 | | I | S | I |
| 4 | | S | I | I |
| 5 | I | I | I | I |

ପାଞ୍ଚ ମାତ୍ରା ବିନ୍ୟାସର ପ୍ରସ୍ତାର:

| | | | | | |
|---|---|---|---|---|---|
| 1 | | | I | S | S |
| 2 | | | S | I | S |
| 3 | | 5 | I | I | S |
| 4 | | | S | S | I |
| 5 | | I | I | S | I |
| 6 | | I | S | I | I |
| 7 | | S | I | I | I |
| 8 | I | I | I | I | I |

ଛ ମାତ୍ରା ବିନ୍ୟାସର ପ୍ରସ୍ତାର:

**ଛ ମାତ୍ରାବିନ୍ୟାସର ପ୍ରସ୍ତାର:**

| | | | | | | |
|---|---|---|---|---|---|---|
| 1 | | | | S | S | S |
| 2 | | | I | I | S | S |
| 3 | | | I | S | I | S |
| 4 | | | S | I | I | S |
| 5 | | I | I | I | I | S |
| 6 | | | I | S | S | I |
| 7 | | | S | I | S | I |
| 8 | | I | I | I | S | I |
| 9 | | | S | S | I | I |
| 10 | | I | I | S | I | I |
| 11 | | I | S | I | I | I |
| 12 | | S | I | I | I | I |
| 13 | I | I | I | I | I | I |

**ସାତ ମାତ୍ରାବିନ୍ୟାସର ପ୍ରସ୍ତାର:**

| | | | | | | |
|---|---|---|---|---|---|---|
| 1 | | | I | S | S | S |
| 2 | | | S | I | S | S |
| 3 | | I | I | I | S | S |
| 4 | | | S | S | I | S |
| 5 | | I | I | S | I | S |
| 6 | | I | S | I | I | S |
| 7 | | S | I | I | I | S |
| 8 | I | I | I | I | I | S |
| 9 | | | S | S | S | I |
| 10 | | I | I | S | S | I |
| 11 | | I | S | I | S | I |
| 12 | | S | I | I | S | I |
| 13 | I | I | I | I | S | I |
| 14 | | I | S | S | I | I |
| 15 | | S | I | S | I | I |
| 16 | I | I | I | S | I | I |
| 17 | | S | S | I | I | I |
| 18 | I | I | S | I | I | I |
| 19 | I | S | I | I | I | I |
| 20 | S | I | I | I | I | I |
| 21 | I I | I | I | I | I | I |

**ଚାରି ମାତ୍ରା ବିନ୍ୟାସର ପ୍ରସ୍ତାର ନିର୍ମାଣ:**

ଯଦି ୪ ମାତ୍ରା ବିଶିଷ୍ଟ ପାଦର ପ୍ରସ୍ତାର ଗଢିବା ତ ପ୍ରଥମ ଧାଡିରେ ଉପରୋକ୍ତ ଚିତ୍ର ମତେ ଦୁଇଟି ଗୁରୁ ବର୍ଣ୍ଣ ନେବେ । ଏହା ପର ଧାଡି ଲେଖିଲା ବେଳେ ବାମରୁ ଯେଉଁଠି ପ୍ରଥମେ ଗୁରୁ ବର୍ଣ୍ଣ ପଡିବ ତା ତଳେ ଲଘୁ ଲେଖା ହେବ । ତା *ଡାହାଣକୁ* ଉପର ଧାଡିର ଲଘୁ ତଳେ ଲଘୁ ଓ ଗୁରୁ ତଳେ ଗୁରୁ - ଯେଉଁଠି ଯାହା ଅଛି - ଲେଖି ଦେଖିବାକୁ ହେବ ମୋଟ ୪ ମାତ୍ରା ହେଲା କି ହେଇ ନାହିଁ । ହେଇ ଗଲା ତ ସରିଲା ସେ ଧାଡି, ହେଇ ନ ଥିଲେ ଯେତେ କମି ଗଲା ବାମ ପଟେ ତାକୁ ଗୋଟିଏ ଗୋଟିଏ କରି ଗୁରୁ ବର୍ଣ୍ଣ ଲେଖି ଲେଖି ମୋଟ 4 ମାତ୍ରା କରିବାକୁ ପଡିବ । ଯେଉଁଠି ଗୁରୁ ଲେଖିଲେ ସେ ଧାଡିର ମୋଟ ମାତ୍ରା ୪ରୁ ଅଧିକ ହେଇ ଯାଉଛି ସେଠି ଲଘୁ ଲେଖିବେ, ବା ୪ ମାତ୍ରା ହେଇ ସାରିଥିଲେ ସେ ଧାଡି ସରିଲା ବୋଲି ଛାଡି ଦେଇ ଏହି ନିୟମରେ ତା ତଳ ଧାଡି ଲେଖିବେ । ଶେଷକୁ ଯେଉଁ ଧାଡିଟି ଚାରିଟି ଲଘୁ ବର୍ଣ୍ଣ ବିଶିଷ୍ଟ ଅର୍ଥାତ୍ ସର୍ବଲଘୁ ହେଇ ଯିବ ଜଣା ଯିବ ଆମ ଚାରି ମାତ୍ରାର ପ୍ରସ୍ତାର ନିର୍ମାଣ ସରିଲା । ଏଥିରେ ପ୍ରଥମ ଧାଡିର ମାତ୍ରା ବିନ୍ୟାସର **SS** ସ୍ଥାନ ଏକ, ଦ୍ୱିତୀୟ ଧାଡିରେ ଥିବା **IIS** ର ସ୍ଥାନ ଦୁଇ, ତା ତଳ ଧାଡିରେ ଥିବା **ISI** ର ସ୍ଥାନ ତିନି ଇତ୍ୟାଦି, ଚତୁର୍ଥ ଧାଡି **SII** ର ସ୍ଥାନ ଚାରି ଓ ଶେଷ ଧାଡିରେ ଥିଲା **IIII** ର ସ୍ଥାନ ପାଞ୍ଚ ।

***ଏହିପରି ଯେ କୌଣସି ସଂଖ୍ୟକ ମାତ୍ରାବିନ୍ୟାସର ପ୍ରସ୍ତାର କଢା ଯାଏ ।***

**ପାଞ୍ଚ ମାତ୍ରା ବିନ୍ୟାସର ପ୍ରସ୍ତାର ନିର୍ମାଣ:**

ଯଦି ୫ ମାତ୍ରା ବିନ୍ୟାସର ପ୍ରସ୍ତାର କରିବା ତେବେ ପ୍ରଥମ ଧାଡିରେ ପ୍ରଥମେ ଡାହାଣରୁ ଗୁରୁ ଲେଖି ଚାଲିବେ । ଯେଉଁଠି ଆଉ ଗୁରୁ ଲେଖିଲେ ଧାଡିର ମୋଟ ମାତ୍ରା ୫ ହେଇ ଯିବ ସେଠି ଗୁରୁ ନ ଲେଖି ଲଘୁ ଲେଖିବେ । ଏହି ପରି ଧାଡିରେ ମୋଟ ପାଞ୍ଚ ମାତ୍ରା ଲେଖିବେ । ଏହା ପର ଧାଡିରେ ବାମରୁ ପ୍ରଥମ ଗୁରୁ ତଳେ ଲଘୁ ଲେଖି ତା ଡାହାଣକୁ ଉପର ଧାଡିରେ ଲଘୁ ବା ଗୁରୁ ଯେଉଁଠି ଯାହା ଅଛି ତଳକୁ ତଳ ତାହା ଲେଖି ସାରି ତା ବାମକୁ ଆବଶ୍ୟକ ସଂଖ୍ୟ ଗୁରୁ ଗୁରୁ ଲେଖି ଲେଖି ଯେଉଁଠି ଆଉ ଗୋଟିଏ ମାତ୍ରା ଆବଶ୍ୟ ହେବ ସେଠି

ଲଘୁ ଲେଖି ଧାଡିକୁ ମୋଟ ୫ ମାତ୍ରା ବିଶିଷ୍ଟ କରିବେ । ପୁଣି ତା ତଳ ତା ତଳ ଧାଡିରେ ସେହି ଏକା ପ୍ରକ୍ରିୟା ଚଳେଇବେ ସର୍ବଲଘୁ ଧାଡି ମିଳିବା ପର୍ଯ୍ୟନ୍ତ।

ଏହିପରି ଯେ କୌଣସି ସଂଖ୍ୟକ ମାତ୍ରାବିନ୍ୟାସର ପ୍ରସ୍ତାର କଢା ଯାଏ ।

**ମାତ୍ରିକ ଛନ୍ଦରେ ପ୍ରଶ୍ନୋତ୍ତର**

(1) ଏବେ ମନେ କରନ୍ତୁ ପ୍ରଶ୍ନ ହେଲା - ସାତ ମାତ୍ରାର ପ୍ରସ୍ତାରରେ SIIIS ର ଅନନ୍ୟ ପରିଚୟ ଅଙ୍କ କେତେ?

**S I I I S**

**I° I I I I I° I**

ଏହାକୁ କଷିବେ ଏହି ପରି । ପ୍ରଥମେ ଏକ ଧାଡିରେ ଛାଡି ଛାଡି SIIIS ଲେଖନ୍ତୁ । ତା ପର ଧାଡିରେ ପ୍ରତ୍ୟେକ ଗୁରୁ ବଦଳରେ ଦୁଇଟି ଲଘୁ ଲେଖନ୍ତୁ । ଯେଉଁ ନୂଆ ଲଘୁ ଯୁଗଳ ଆସିବ ସେଥିରୁ ପ୍ରଥମ ଗୁଡିକ ଚିହ୍ନିତ କରି ବାମରୁ ସେଗୁଡିକର ସ୍ଥାନ ଦେଖନ୍ତୁ । ଏ ଉଦାହରଣରେ ସେଗୁଡିକର ସ୍ଥାନ ଏଅ ଓ ଛ । ଆମ ମାତ୍ରିକ ଗୋପନିକା ସାରଣୀରେ ଏକରେ ଲଘୁର ସ୍ଥାନୀୟ ମାନ 1 ଓ ଛରେ ମାନ 13 ଏବଂ ଏ ଦୁହିଙ୍କ ଯୋଗଫଳ 14. ସାତ ମାତ୍ରା ବିଶିଷ୍ଟ ପାଦରେ ମୋଟ ମାତ୍ରା ବିନ୍ୟାସ 21 ପ୍ରକାର । ଏହି 21 ରୁ 14 ବିୟୋଗ କଲେ ହେବ 7 । ଅତଏବ SIIIS ର ସ୍ଥାନ ଆମ ପ୍ରସ୍ତାରରେ 7 ।

(2) ସେହି ପରି ISISI କଥା ଦେଖିବା ।

I S I S I

I I° I I I° I I

ଏଥିରେ ଗୁରୁଗୁଡିକୁ ଭାଙ୍ଗି ଯୋଡେ ଲେଖା ଲଘୁ କଲେ ନୂଆ ଲଘୁଯୋଡରୁ ପ୍ରଥମ ଲଘୁ ପଡୁଛି ଦୁଗରେ ଓ ପାଞ୍ଚରେ । ଆମର ଗୋପନିକା ସାରଣୀବା cipher table ରେ ଦୁଇର ମାନ 2 ଓ ପାଞ୍ଚର ମାନ 8, ଯୋଗଫଳ 10. ମୋଟ 21ଟି ମାତ୍ରାବିନ୍ୟାସରୁ 10 ଗଲେ ରହିବ 11, ତେଣୁ ସାତ ମିତ୍ରାର ପ୍ରସ୍ତାରରେ ISISI ର ସ୍ଥାନ 11.

(3) ପ୍ରଶ୍ନ ହେବ, ସାତ ମାତ୍ରାର ପ୍ରସ୍ତାରରେ ନବମ ସ୍ଥାନରେ ମାତ୍ରାବିନ୍ୟାସ କଣ ଥିବ? ନିମ୍ନ ମତେ କଷିବେ ।

ଟ

I° I I° I I° I I

S S S I

ପ୍ରଥମେ ସାତ ମାତ୍ରା ପାଇଁ ସାତଟି ଲଘୁ ଲେଖନ୍ତୁ । ନବମ ସ୍ଥାନର ବିନ୍ୟାସ କାଢିବା । ମୋଟ 21ରୁ 9 (ନ) ଗଲେ ରହିବ 12 ଓ ଏହି 12 ଆମ ଗୋପନିକାରେ ଥିବା 8, 3 ଓ 1 ର ଯୋଗ ଫଳ । 1ର ସ୍ଥାନ ପ୍ରଥମରୁ ଦେଖିଲେ, 3ର ତୃତୀୟରେ ଏବଂ 8ର ପଞ୍ଚମରେ । ତେଣୁ ତା ତଳ ଧାଡିରେ ପ୍ରଥମ ଲଘୁ ସହ ତା ପର (ଦ୍ୱିତୀୟ) ଲଘୁ, ତୃତୀୟ ଲଘୁ ସହ ଚତୁର୍ଥ ଲଘୁ ଓ ପଞ୍ଚମ ଲଘୁ ସହ ଷଷ୍ଠ ଲଘୁ ମିଶେଇ ଗୁରୁ ଲେଖନ୍ତୁ । ବାକି ମେତିକି

ଲଘୁ  ରହି ଗଲା ତାକୁ ସେହି ପରି ଲଘୁ ଥାଇ ତଳ ଧାଡିରେ ଲେଖନ୍ତୁ । ଏବେ ଦେଖନ୍ତୁ ମାତ୍ରାବିନ୍ୟାସ ହେଲା SSSI ଓ ପ୍ରସ୍ତାରରେ ଏହାର ସ୍ଥାନ 9 (ନ) ।

By Lalatendu Kabi

==================================

# ଷଷ୍ଠ ଅଧ୍ୟାୟ: ଗଣଦେବତାଦି ଜ୍ଞାନ

==================================

ସବୁ ଗଣଙ୍କର ଭିନ୍ନ ଭିନ୍ନ ଦେବତା ଅଛନ୍ତି । ଏମାନଙ୍କୁ ପ୍ରତି ଦିନ ପୂଜାର୍ଚ୍ଚନା କରି ପ୍ରୀତ କଲେ ଶୁଭଫଳ ଦାତା ଦେବଗଣ ବହୁତ ବହୁତ ଶୁଭ ଦିଅନ୍ତି ଓ ଅଶୁଭଦାତା ଦେବଗଣ ଅଶୁଭ ଦେବାରୁ ନିବୃତ୍ତ ରହନ୍ତି । ତେବେ ଗଣଦେବତାଙ୍କୁ ପୂଜିବା ପୂର୍ବରୁ ପ୍ରଥମେ ଆଚାର୍ଯ୍ୟ ପିଙ୍ଗଳଙ୍କୁ ସ୍ମରଣ କରି ଗଣପତି ବିଘ୍ନନାଶ ଶ୍ରୀଗଣେଶଙ୍କୁ ଆରାଧନା କରିବେ ଓ ଛନ୍ଦଃଶାସ୍ତ୍ରର ବନ୍ଦନା କରିବେ । ମନ୍ତ୍ରାଦି ଜାଣି ନ ଥିଲେ ବି ମାନସ ପୂଜାରେ ଅସୁବିଧା ନାହିଁ । ମନୋଯୋଗ ସହ କଲେ ମାନସ ପୂଜା ହିଁ ଶ୍ରେଷ୍ଠପୂଜା ।

| ଗଣ | ରୂପ | ଦେବତା | ଫଳ | ମିତ୍ରାଦି | ଶୁଭାଶୁଭ |
|---|---|---|---|---|---|
| ମଗଣ | SSS | ପୃଥିବୀ | ଲକ୍ଷ୍ମୀ | ମିତ୍ର | ଶୁଭ |
| ୟଗଣ | ISS | ଜଳ | ଆୟୁ | ଦାସ | ଶୁଭ |
| ରଗଣ | SIS | ଅଗ୍ନି | ଦାହ | ଶତ୍ରୁ | ଅଶୁଭ |
| ସଗଣ | IIS | ପବନ | ବିଦେଶ | ଶତ୍ରୁ | ଅଶୁଭ |
| ତଗଣ | SSI | ଆକାଶ | ଶୂନ୍ୟ | ଉଦାସ | ସମ |
| ଜଗଣ | ISI | ସୂର୍ଯ୍ୟ | ରୋଗ | ଉଦାସ | ଅଶୁଭ |
| ଭଗଣ | SII | ଚନ୍ଦ୍ର | ଯଶ | ଉଦାସ | ଅଶୁଭ |
| ନଗଣ | III | ସ୍ୱର୍ଗ | ସୁଖ | ମିତ୍ର | ଶୁଭ |

============================

# ସପ୍ତମ ଅଧ୍ୟାୟ: ଛନ୍ଦ ବିଶ୍ୱମୟ

*ବିଦେଶାଗତ ସନେଟ୍ (sonnet)*

ସବୁ ଉନ୍ନତ ଭାଷାରେ ଛନ୍ଦ ବିଦ୍ୟମାନ - ଆରବିକ ପାରସିକରେ ଉର୍ଦ୍ଦୁରେ - ସବୁ ଭାଷାରେ ।
ଇଂରାଜୀରେ ମଧ୍ୟ ଛନ୍ଦ ଅଛି । ଆମ ବାର୍ଣ୍ଣିକ ଛନ୍ଦ ପରି ତାଙ୍କର ବି qualitative prosody ଓ ଆମ ମାତ୍ରିକ ଛନ୍ଦ ପରି ତାଙ୍କର ବି quantitative prosody ରହିଛି । ସେମାନେ ଲଘୁ ବର୍ଣ୍ଣକୁ unstressed syllable ଓ ଗୁରୁ ବର୍ଣ୍ଣକୁ stressed syllable କହନ୍ତି । ଆମ ଶାସ୍ତ୍ରରେ ତିନି ତିନି ବର୍ଣ୍ଣକୁ ନେଇ ଗଣଗୁଡିକ ପରି ତାଙ୍କର ବି ଏହି ଗଣଗୁଡିକର ନାମ ଅଛି । ସେହି ନାମ ଗୁଡିକ କାହାର କଣ, ନିମ୍ନସ୍ଥ ସାରଣୀରେ ଦତ୍ତ ହେଲା ।

-01-

Meters in Poetry: English versus Indian

Where 1= unstressed/लघु & 2= stressed/ गुरु

Notation Name and Notes

वर्णयुग्म

| वर्ण<br>Syllables | \|छन्द नाम\|<br>\|Indian Name\| | \|अंग्रेजी नाम\|<br>\|English Name\| |
|---|---|---|
| 11 | मघु | pyrrhic |
| 12 | मही | iamb |
| 21 | चारु/सारु | trochee |
| 22 | स्त्री/कामा | spondee |

वर्णगण

| वर्ण<br>Sylb. | \|छन्द/नामान्तर<br>\|Indian | (गण)\|<br>Name\| | \|अंग्रेजी नाम\|<br>\|English Name] |
|---|---|---|---|
| 111 | कमलि/ हरणि | (नगण) | tribrach |
| 112 | रमणा —— | (सगण) | anapest |
| 121 | मृगेन्दु/ नरेन्दु | (जगण) | amphibrach |
| 122 | शशी/ वलाका | (यगण) | bachhius |
| 211 | मन्दरि —— | (भगण) | dactyl |
| 212 | मृगी/ प्रिया | (रगण) | cretic, amphimacer |

221 पाञ्चाली —— (तगण) antibachhius

222 नारी —— (मगण) molossus

Compiled by L. Kabi

-02-

चातुर्वर्ण्य

| वर्ण<br>Syllables | \|छन्द नाम\|<br>\|Indian Name\| | \|अंग्रेजी नाम\|<br>\|English Name\| |
|---|---|---|
| 1111 | हरि | Proceleus<br>maticus<br>or<br>proceleus-<br>maticus<br>or<br>tetrabrach. |
| 1112 | सती | Fourth paeon. |
| 1121 | सञ्ज | Third paeon. |
| 1122 | देवी | Ionic minor<br>or<br>ionic a minore<br>or<br>double iamb.<br>(See “pryyhic”) |
| 1211 | धर | Second paeon. |
| 1212 | सुधी | Diamb. |
| 1221 | उषा | Antispast. |
| 1222 | क्रीडा | First epitrite. |
| 2111 | निशि | First paeon. |
| 2112 | कला | Choriamb. |
| 2121 | धारी | Ditrochee |
| 2122 | रङ्गी | Second epitrite |
| 2211 | कृष्णा | ionic major<br>or<br>ionic a majore<br>or<br>double trochee |

| | | |
|---|---|---|
| 2212 | धूर | Third epitrite. |
| 2221 | धार | Fourth epitrite. |
| 2222 | कन्या | Dispondee. |

Boad Classification of Prosody छंदका प्रमुख भेद

वार्णिक छंद qualitative meter

मात्रिक छंद quantitative meter

Compiled by L. Kabi

ଇଂରାଜୀର ଛନ୍ଦ ବା prosody ସମ୍ବନ୍ଧରେ ସର୍ବନିମ୍ନ ଜ୍ଞାତବ୍ୟ କିଛି ପରିଭାଷା ଓ ତା ବ୍ୟାଖ୍ୟା ଇଂରାଜୀରେ ହିଁ ପଢିବେ ସମୁଚିତ ହେବ ।

Poetic Meters

Meter is the rhythmic structure of a poem. It refers to the number of syllables and the arrangement of stresses per line. Iambic pentameter is considered the most common form of meter in poetry, which was used extensively poetry from the likes of William Shakespeare.

Accent: गुरुत्वारोप
stressed syllable in a word.

Accentual Verse:
focuses on the number of stressed syllables per line.

Accentual-Syllabic Verse:वर्णसम पादावली
type of accentual verse in which the writer uses the same number of syllables within each line.

Acephalous:
a catalectic line of poetry. This type of line omits the first syllable of a metrical pattern.

Alcaic Stanza
An alcaic stanza is a type of lyrical meter thought to have been invented by Alcaeus, a writer from Mitylene.

Alexandrine:
most commonly refers to a line composed of twelve iambs.

Alliterative Meter: शब्दारम्भानुप्रास

focuses on alliteration as a way of creating a metrical structure. Alliteration is used rather than accents or rhymes.

Amphibrach: जगण

a form of meter that places one accented syllable, or stressed syllable, between two unstressed or unaccented syllables.

Amphimacer: रगण

a metrical foot that consists of three syllables. It's the opposite of an amphibrach.

Anacrusis: लघ्वतिरिक्तारम्भ

when the poet includes an extra unstressed syllable at the beginning of a line of verse as not a part of the metrical pattern.

Anapest: सगण

Anapestic Meter depends on three-syllable sections of verse, or words. An anapest is two unstressed syllables followed by one stressed.

Anapestic Tetrameter: चतुर्सगण (तोटक छंद

it consists of four anapests in each line of verse. An anapest is made up of two unstressed syllables followed by a stressed syllable.

Cretic: रगण

A cretic is an extremely rare metrical foot that's composed of one stressed syllable followed by an unstressed syllable and concluded with one final stressed syllable.

Dactyl: भगण

A dactyl is one stressed syllable followed by two unstressed syllables. It is the opposite of an anapest.

Dactylic Hexameter: षड्भगण

Dactylic hexameter is a historically important pattern of syllables in poetry. Lines of dactylic hexameter have six feet, divided into sets of three beats.

Dactylic Pentameter: पञ्चभगण

Dactylic pentameter is a metrical pattern that can be found in some examples of English language poetry. The term refers to lines that consist of five, or sets of syllables, per line with three syllables per foot.

Dimeter:
Dimeter refers to a specific arrangement of syllables in poetry. If a poem is written in dimeter, that means that the lines contain four syllables each.

Falling Rhythm:
The term “falling rhythm” refers to a rhythmic pattern that’s created through repeated metrical feet. These feet use a stressed beat followed by an unstressed beat or an accented syllable followed by an unaccented syllable.

Heptameter: वर्णयुग्म सप्तक
Heptameter is a type of meter in which each line in a poem uses seven metrical feet for a total of fourteen syllables.

Hexameter:
Hexameter refers to a meter commonly used in Greek and Latin epic poetry. It contains six feet and usually utilizes a combination of dactyls and spondees.

Iamb: तनुतुम्र /लगौ
An iamb is a metrical unit. It occurs when two syllables are placed next to one another and the first is unstressed, or short, and the second is stressed, or long.

Iambic Dimeter: तनुतुम्र युग्मक
Iambic dimeter is a type of meter used in poetry. It occurs when the writer uses two iambs per line of verse.

Iambic Pentameter: तनुतुम्र पञ्चक
Iambic pentameter is a very common way that lines of poetry are structured. Each line has five sets of two beats, the first is unstressed and the second is stressed.

Masculine Ending: गुर्वन्तक
A masculine ending, a common term used in prosody, occurs when a metered verse line ends with a stressed syllable.

Meter: छंद पाद, छंद चरण

The meter is the pattern of beats in a line of poetry. It is a combination of the number of beats and arrangement of stresses.

Monometer:

Monometer is a type of meter that uses single units of meter per line of verse. It could use a single iamb, trochee, etc.

Octameter: समवर्णयुग्म अष्टक

Octameter refers to a line of verse that contains sixteen syllables or eight metrical feet. It is one of the less common patterns in English language verse.

Octosyllabic: अष्टवर्णा (अनुष्टुप्)

Octosyllabic verse, or an octosyllable poem, is a piece of poetry that uses eight-syllable lines. It's possible to describe an entire poem or a single line as octosyllabic.

Pentameter: वर्णयुग्म पञ्चक

In poetry, "pentameter" refers to a line that contains a total of ten syllables. Commonly, these are divided into iambs or trochees.

Poetic Foot: गण

In literature, a foot refers to a unit of meter in poetry. It is a grouping of stressed and/or unstressed syllables.

Pyrrhic: तनुयुग्म / लौ

The term "pyrrhic" is used to refer to a metrical foot that contains two unstressed syllables. The foot is less common today than it was in classical Greek poetry.

Qualitative Verse: वाणिक छंद

Qualitative meter is characterized by stressed syllables coming at regular intervals—such as the consistent flow of five iambs in a line of a Shakespearean sonnet.

Quantitative Verse: मात्रिक छंद

Quantitative verse is a metrical system used in classical poetry that is dependent on the duration of syllables rather than the number of stresses. (Quantitative meter, by contrast, is built on patterns based on syllable weight rather than stress. For instance, in quantitative meter, a line that is technically written in

dactylic hexameter could contain not only dactyls (DUH-duh-duh) but also a spondee (DUH-DUH). What matters is not the "stress" on a syllable but rather the "length" of a syllable.)

Rhythm: वणसज्जा

Rhythm refers to the use of long and short stresses, or stressed and unstressed, within the writing.

Spondee: तुम्रयुग्म /ग्लौ

Spondee is an arrangement of two syllables in which both are stressed.

Sprung Rhythm:

Sprung rhythm is a rhythmic pattern used in poetry that mimics natural speech.

Strong-stress Meter:

Strong-stress meter is a less-commonly used term to describe the metrical pattern used in accentual verse. That is, verse that depends entirely on the number of stresses per line.

Tetrameter: चतुर्गण

The term "tetrameter" refers to a line of poetry that includes four metrical feet. These feet may conform to various metrical forms.

Trochaic Heptameter: तुम्रतनु सप्तक

Trochaic heptameter is a metrical pattern that consists of seven sets of two syllables. The first syllable in each foot is stressed and the second is unstressed. In total, there are fourteen syllables in every line of trochaic heptameter.

Trochaic Pentameter: तुम्रतनु पञ्चक /

Trochaic pentameter is an uncommon form of meter. It refers to lines of verse that contain five sets of two beats, the first of which is stressed and the second is unstressed.

Trochaic Tetrameter: तुम्रतनु चतुष्क गलौ

Trochaic tetrameter is a metrical pattern that involves using four trochees in a regular pattern. Each trochee is made up of one stressed syllable and one unstressed syllable.

Trochaic Trimeter: तुम्रतनु त्रय

Trochaic Trimeter is a poetic meter used in many different forms of writing. It consists of three syllables per line, with the first syllable being stressed and the second one being unstressed.

Trochee: तुम्रतनु / गलौ

Trochees are the exact opposite of an iamb, meaning that the first syllable is stressed and the second is unstressed.

Weak Ending: तुम्रतन्वन्तक

A weak ending occurs when a poet ends a line with an unstressed syllable. Often, the syllable extends the metrical pattern beyond that which is used in most of the poem.

ଏହିପରି ଏକ ବିର୍ଣ୍ଣିଖ ଛନ୍ଦ ହେଲା ସନେଟ୍ (sonnet) I ତଳେ ସନେଟର ନିୟମାବଳୀ ଦିଆ ଗଲା I

ସନେଟ୍ (sonnet) କଣ

ସନେଟ୍ କଣ: ସନେଟ୍ ଏକ କଠୋର ଶୃଙ୍ଖଳାଧୀନ କବିତା ରଚନାର ଶୈଳୀ I

ସଂଗଠନ: ଏଥିରେ ୧୦ ଧ୍ୱନି-ଏକକ (syllable) ବିଶିଷ୍ଟ ୧୪ଟି ଧାଡି ବା ପଙ୍କ୍ତି ରହେ I ଭାରତୀୟ ଭାଷାରେ ସନେଟ୍ ଲେଖିଲେ ପ୍ରତି ପଙ୍କ୍ତିରେ ଦଶ ଅକ୍ଷର କହିବା ଠିକ୍ ହେବ I

ଅକ୍ଷରକ୍ରମ: ଏହି ଅକ୍ଷର ଗୁଡିକ ଗୋଟିଏ ଲଘୁ (unstressed or short) ପରେ ଗୋଟିଏ ଗୁରୁ (stressed or long ) ହେବା ବିଧେୟ I ଆମ ଶାସ୍ତ୍ରରେ ଏହି ୧୦ ଅକ୍ଷର ବିଶିଷ୍ଟ ଅବିକଳ ଛନ୍ଦର ନାମ ସରାବିକା I

ବିଷୟସଜ୍ଜା: ସନେଟ୍‌ର ପ୍ରଥମ ଚତୁଷ୍ପାଦିକ (quatrain)ରେ ମୁଖ୍ୟ ବିଷୟର ଉପସ୍ଥାପନ, ଦ୍ୱିତୀୟରେ ବିଷୟର ବିସ୍ତାରଣ ଓ ତୃତୀୟରେ ବିପରୀତ ଭାବନ ରହେ I ଯୁଗ୍ମକ (couplet)ଟିରେ ସୁସ୍ପଷ୍ଟ ଉପସଂହାର ରହେ I

ସାବଧାନତା: ଏହି ନିୟମଗୁଡିକ ନ ମାନି ଲେଖିଲେ ସନେଟ୍ ସନେଟ୍ ବୋଲି ଯେତେ ରଡି ଛାଡିଲେ ବି ଶାସ୍ତ୍ରାନୁସାରେ ଲେଖାଗୁଡିକ ସନେଟ୍ ହେଇ ଯାଏ ନାହି I ସ୍ମରଣୀୟ ଯେ ଦୋହା କି ରୁବାଇ ମଧ୍ୟ କବିତାର ଶୀର୍ଷକ ପାଖରେ ସେ ପରି ଲେଖି ଦେଲେ ହେଇ ଯାଏ ନାହିଁ I ଯିଏ ଯାହା ଲେଖିବ ତାକୁ ତା ନିୟମ ଜାଣି ସେ ପରି ଲେଖିବାକୁ ହେବ I

ଆନ୍ତ୍ୟମିଳନ: ସନେଟ୍‌ରେ 14ଟି ପଙ୍କ୍ତିର ଆନ୍ତ୍ୟମିଳନ ଶୈଳୀ ହେଲା ABAB, CDCD, EFEF ଓ GG ଯେଉଁଥିରେ କି A, B ଆଦି ପରସ୍ପରଠୁ ଭିନ୍ନ ସମାପକ । ତେବେ ଅନ୍ୟ ଏକ ଭେଦ (variant)ରେ ABAB BCBC CDCD EE ମଧ୍ୟ ହୁଏ । ଏଥିରେ A B ଓ C ଇତ୍ୟାଦି ପରସ୍ପରଠୁ ଭିନ୍ନ ଶେଷାକ୍ଷର ।

ପ୍ରକାରଭେଦ: ସନେଟ୍ ମୁଖ୍ୟତଃ ଦୁଇ ପ୍ରକାରର: ସେକ୍ସ୍‌ପିରୀୟ (Shakespearean) ଓ ପେଟ୍ରାର୍କୀୟ (Petrarchan). ଏ ଯାଏ ସେକ୍ସ୍‌ପିରୀୟ ସନେଟ୍ ବିଷୟରେ କହିଥିଲି ।

ପେଟ୍ରାର୍କୀୟ: ଏହି ସନେଟ୍‌ରେ ପ୍ରଭେଦ ଏହି ଯେ ଏଥିରେ ଧାଡିଗୁଡିକୁ 3ଟି ଚତୁଷ୍ପାଦିକ ଓ 1ଟି ଯୁଗ୍ମକରେ ଶ୍ରେଣୀବଦ୍ଧ (grouping) ନ କରି ପ୍ରଥମ 8 ଧାଡିକୁ 1ଟି ଅଷ୍ଟକ (octave) ଓ ପର 6 ଧାଡି ଏକତ୍ର କରି 1ଟି ଷଷ୍ଟକ (sestet)ରେ ଶ୍ରେଣୀବଦ୍ଧ କରା ଯାଏ । ଏହାର ଆନ୍ତ୍ୟ ମିଳନ ବି ଭିନ୍ନ ପ୍ରକାର କରୁଛନ୍ତି । ଯଥା: (1) ABBA ABBA CDECDE (2) ABBA ABBA CDCCDC । ଏଥିରେ ବି ଏକା ବର୍ଣ୍ଣଶୃଙ୍ଖଳା ବାଧ୍ୟତାମୂଳକ ।

ସରାବିକା ଛନ୍ଦ କଣ: ଏହା ଏକ ଦଶାକ୍ଷର ବିଶିଷ୍ଟ ଅର୍ଥାତ୍ ପଙ୍କ୍ତି ଶ୍ରେଣୀୟ ବାର୍ଣ୍ଣିକ ଛନ୍ଦ । ଏଥିରେ ଲଘୁ ଓ ଗୁରୁ ମିଶି ମୋଟ 10ଟି ବର୍ଣ୍ଣ ରହିବାର କ୍ରମ ହେଲା: 121-212-121-2 ଯେଉଁଥିରେ କି 1 ଲଘୁ ବର୍ଣ୍ଣ ଓ 2 ଗୁରୁ ବର୍ଣ୍ଣର ସୂଚକ ।

ଲଘୁ ଓ ଗୁରୁ ବର୍ଣ୍ଣ କଣ: ଯେଉଁ ବର୍ଣ୍ଣର ଉଚ୍ଚାରଣ ସମୟ 1 ଏକକ (one unit) ବା 1 ମାତ୍ରା ତାହା ଲଘୁ ବର୍ଣ୍ଣ ଓ ଯାହାର ଉଚ୍ଚାରଣ ସମୟ 2 ଏକକ ବା 2 ମାତ୍ରା ତାହା ଗୁରୁ ବର୍ଣ୍ଣ ।

ଲଘୁ ଓ ଗୁରୁ ବର୍ଣ୍ଣ ନିର୍ଣ୍ଣୟ: ବ୍ୟାକରଣରେ ପଢା ହେଇଛି କି ଅ, ଇ, ଉ, ଋ, ଌ - ଏହି 5ଟି ହ୍ରସ୍ୱ ସ୍ୱର ଓ ବାକି ଆ, ଈ, ଊ, ୠ, ଏ, ଐ, ଓ,ଔ - ଏହି 8ଟି ଦୀର୍ଘ ସ୍ୱର । ଛନ୍ଦ ଶାସ୍ତ୍ରରେ ସମସ୍ତ ଦୀର୍ଘ ସ୍ୱର ଗୁରୁ ବର୍ଣ୍ଣ । କିନ୍ତୁ ହ୍ରସ୍ୱ ସ୍ୱର ଗୁଡିକ ସାଧାରଣତଃ ଲଘୁ ହେଲେ ହେଁ ସ୍ଥଳବିଶେଷରେ ସେଗୁଡିକ ବୋଲିଲା ବେଳେ ଅଧିକ ସମୟ ନିଅନ୍ତି ବୋଲି କାବ୍ୟରେ ଗୁରୁ ବର୍ଣ୍ଣ । ଏହି ସ୍ଥିତି ଗୁଡିକ ହେଲା -

(୧) ଯେଉଁଥିରେ ଅନୁସ୍ୱାର ବା ବିସର୍ଗ ଯୋଗ ହେଇ ଥିବ ସେହି ବର୍ଣ୍ଣ ଗୁରୁ ବର୍ଣ୍ଣ

(୨) ଏକା ପାଦ ବା ଚରଣରେ ଯେଉଁ ବର୍ଣ୍ଣର ଠିକ୍ ପରେ ଯୁକ୍ତାକ୍ଷର ବା ହଳନ୍ତକ ବର୍ଣ୍ଣ ଥିବ ତାହା ମଧ୍ୟ ଗୁରୁ ବର୍ଣ୍ଣ ।

(୩) ପାଦର ଶେଷକୁ ଲଘୁ ବର୍ଣ୍ଣ ଥିଲେ ବି ତାକୁ ଗୁରୁ ବର୍ଣ୍ଣର ବୋଲି ମାନ୍ୟତା ଦିଆ ଯାଇ ପାରିବ ।

ସ୍ମରଣୀୟ: ବ୍ୟଞ୍ଜନ ବର୍ଣ୍ଣର ମାତ୍ରା ନ ଥାଏ ।

ଉଦାହରଣ:

ଶବ୍ଦ ମାତ୍ରା ବିଚାର
---- --------------
କସ - କରେ 1 ମାତ୍ରା, ସରେ 1 ମାତ୍ରା ।

କଂସ - କଂରେ 2, ସରେ 1 ମାତ୍ରା ।

ବଂଶୀ - ବଂରେ 2, ଶୀରେ 2 ମାତ୍ରା ।

ଚକ - ଚରେ 1 ଓ କରେ 1 ମାତ୍ରା ।

ଦୁଃଖ - ଦୁଃରେ 2 ଖରେ 1 ମାତ୍ରା ।

ଚୁପ୍ - ଚୁରେ 2 ମାତ୍ରା ପ୍‌ରେ 0 ମାତ୍ରା ।

ଭବିଷ୍ୟତ୍ - ଭରେ 1, ବିରେ 2, ଷ୍ୟରେ 2, ତ୍‌ରେ 0 ମାତ୍ରା ।

ହଠାତ୍ - ହରେ 1, ଠାରେ 2, ତ୍‌ରେ 0 ମାତ୍ରା ।

ମାତ୍ରିକ ଓ ବାର୍ଣ୍ଣିକ ଛନ୍ଦ କଣ: ବୈଦିକ ଛନ୍ଦଠୁ ଭିନ୍ନ ଆମ ଛନ୍ଦ ଶାସ୍ତ୍ରରେ ଦୁଇ ପ୍ରକାର ଲୌକିକ ଛନ୍ଦ ଅଛି - ମାତ୍ରିକ ଛନ୍ଦ ଓ ବାର୍ଣ୍ଣିକ ଛନ୍ଦ । ମାତ୍ରିକ ଛନ୍ଦରେ ମାତ୍ରା ଗଣନା ହୁଏ । ବାର୍ଣ୍ଣିକ ଛନ୍ଦରେ ପ୍ରତି ଧାଡିରେ ଯେଉଁଠି ଲଘୁ ବା ଗୁରୁ ଯେଉଁ ବର୍ଣ୍ଣର ବିଧାନ ଥିବ ସେଠି ସେହି ବର୍ଣ୍ଣ ଲେଖିବାକୁ ପଡିବ ଅର୍ଥାତ୍ ପ୍ରତି ଧାଡି ବା ପାଦରେ ଲଘୁଗୁରୁ ବର୍ଣ୍ଣକ୍ରମ ସମାନ ରହିବ ।

ସରାବିକା କାହିଁକି: ବାର୍ଣ୍ଣିକ ଛନ୍ଦ କଠୋର କିନ୍ତୁ ସନେଟ୍ କ୍ଷେତ୍ରରେ ସେହି ବାର୍ଣ୍ଣିକ ଛନ୍ଦ ବିଶେଷ "ସରାବିକା" ହିଁ ପ୍ରୟୋଗ୍ୟ । କାରଣ ହେଲା ଇଂରାଜୀରେ ସନେଟ୍ ଏହି କଠୋର ବର୍ଣ୍ଣକ୍ରମରେ ହିଁ ଲେଖା ହୁଏ ।

ଓଡିଆରେ ସନେଟ୍: ଏବେ ଓଡିଆ ଭାଷାରେ ଏହି ବାର୍ଣ୍ଣିକ ଛନ୍ଦ ସରାବିକାରେ ରଚିତ ସେକ୍‌ସ୍‌ପିରୀୟ ସନେଟ୍‌ର ଉଦାହରଣ ନିଅନ୍ତୁ ।

ଉଦାହରଣ:

(୧)

====================

ଛନ୍ଦ: ସରାବିକା

ଛନ୍ଦର ଲକ୍ଷଣ: 121-212-121-2

(ଏଥିରେ 1= ଲଘୁବର୍ଣ୍ଣ ଓ 2= ଗୁରୁବର୍ଣ୍ଣ;)

====================

କବିତା: ସନେଟ ଲେଖିବା ବିଧାନରେ

ସନେଟ ଚୌଦପାଦ ଗୀତିକା (A = କା)
ପୁନଶ୍ଚ ପାଦଟେ ଦଶାକ୍ଷରେ (B= ରେ)
କ୍ରମାନ୍ୱୟେ ଥିବାର ଖଞ୍ଜିକା (A = କା)
ସୁଦୀର୍ଘଟେ ଅଦୀର୍ଘଟେ ପରେ । (B= ରେ)
ସୁଦୀର୍ଘ= ଗୁରୁବର୍ଣ୍ଣ; ଅଦୀର୍ଘଟେ= ଲଘୁବର୍ଣ୍ଣ;
ପ୍ରମେୟ ଆଦ୍ୟରେ ଚତୁଷ୍ପଦେ (C= ଦେ)

ବିଶେଷ ପାଞ୍ଚ-ଆଠ ପଙ୍କ୍ତିକେ (D= କେ)
ନଠାରୁ ବାର ବାମ ଆସ୍ବଦେ (C= ଦେ)
ଦି ଧାଡିରେ ସମାପ୍ତି ଯୁଗ୍ମକେ । (D= କେ)

ପ୍ରମେୟ= ବକ୍ତବ୍ୟ, theorem; ଚତୁଷ୍ପଦ= quatrain; ବିଶେଷ= ବିସ୍ତାର, expansion; ବାମ= ବିପରୀତ ଭାବନ ବା ତର୍କ; ଆସ୍ବଦ= ବ୍ୟାପାର, ବ୍ୟବହାର, affair; ଯୁଗ୍ମକ= couplet;

ଅନେକ ଚୌଦ ଧାଡି ଲେଖିଲେ (E= ଲେ)
ମଣନ୍ତି ତା ସନେଟ ଗୋଟିଏ । (F= ଏ)
ନମାନି ତା ବିଧାନ ଯା କଲେ (E= ଲେ)
ସନେଟ ତାକୁ ମାନିବେ କିଏ । (F= ଏ)
ସନେଟ ଲେଖିବାକୁ ଆଗ୍ରହୀ ! (G= ହୀ)
ବିଧାନ ମାନ ଦେଖୁ ଏ ସହୀ । (G= ହୀ)
(L. Kabi)
(୨)
====================
ଛନ୍ଦ: ସରାବିକା
ଛନ୍ଦର ଲକ୍ଷଣ: 121-212-121-2
(ଏଥିରେ 1= ଲଘୁବର୍ଣ୍ଣ ଓ 2= ଗୁରୁବର୍ଣ୍ଣ;)
====================
କବିତା: ମନୁଷ୍ୟଜନ୍ମ

ମନୁଷ୍ୟଜନ୍ମ ସାର ଶାଶ୍ୱତେ
ବିବେକ ବୁଦ୍ଧି ଯୁକ୍ତ ଜୀବ ସେ ।
ଶରୀର ଦକ୍ଷ ତାର ସଂସୃତେ
ରସା ତଳେ ସମସ୍ତ ତା ବଶେ । 1
ଶାଶ୍ୱତୀ= ପୃଥିବୀ; ସଂସୃତି= ସଂସାର;
ମନୁଷ୍ୟ ଧର୍ମ ନୀତି ଆଦରେ,
ପଢେ ପଢାଇ ଥାଇ ଶାବକେ;
ସିଏ ଜିଣେ ସଦା ଚରାଚରେ,
ଅନନ୍ୟ ଜୀବ ଏହି ଗୋଲକେ । 2
ଗୋଲକ= ପୃଥିବୀ;

ଶଠତ୍ୱ ଆଚରେ ବି ମାନବ,
ଅସତ୍ୟ ଭାଷଣେ ଜିଣେ ଧରା,
ଫଳେ ସ୍ୱତଃ ହୁଏ ଅସମ୍ଭବ

ମମତ୍ୱପୂରିତା ବସୁନ୍ଧରା । 3
ମନୁଷ୍ୟ ଜନ୍ମରେ ମହାନତା
ମିଳେ ସର୍ବଦୈବ ମାନି ଶୀଳତା ।
(L. Kabi)
L. Kabi 22-11-07-22-48

=================================

# ଅଷ୍ଟମ ଅଧ୍ୟାୟ: ଉପାଦେୟ ଗ୍ରନ୍ଥାବଳୀ ସୂଚନା

=================================

ଏ ଗ୍ରନ୍ଥ ପାଠ ପରେ ଛନ୍ଦଃଶାସ୍ତ୍ରର ଅଧିକ ଅଧ୍ୟୟନ ନିମନ୍ତେ ନିମ୍ନସ୍ଥ ଗ୍ରନ୍ଥଗୁଡିକରୁ ଏକ ଏକାଧିକ ବା ସମସ୍ତ ଗ୍ରନ୍ଥ ପାଠ କରନ୍ତୁ ଯେ ବହୁତ ଭଲ ହେବ । ଭଲ କଣ ହେବ? ଭଲ ଏହି ଯେ ଯେତେ ପଢୁ ଥିବେ ସେତେ ଶିଖୁ ଥିବେ - ଆଉ କିଛି ଭଲ ନାହିଁ । ଶିଖିବାଟା ହିଁ ଭଲ ।

1- ଛନ୍ଦଃଶାସ୍ତ୍ର
2- ବାଗ୍‌ବଲ୍ଲଭ
3- ବୃତ୍ତରତ୍ନାକର
4- ଛନ୍ଦ ପ୍ରଭାକର
5- ଛନ୍ଦୋମଞ୍ଜରୀ
6- ଛନ୍ଦୋବିଧାନ
7- ଛନ୍ଦ କୌସ୍ତୁଭ
8- ବୃତ୍ତଦର୍ପଣ
9- ଛନ୍ଦୋନୁଶାସନ
10-ବୃତ୍ତମୌକ୍ତିକ
11-ଶ୍ରୁତବୋଧ
12-Sanskrit Prosody

=========

ଏ ବହି ସମାପ୍ତ

Lalatendu Kabi
🙏🙏🙏
7978 680 712

=========